# ସ୍ମୃତି ଅର୍ଘ୍ୟ



ଆବିର୍ଭାବ
୧୨.୬.୧୯୨୫

ତିରୋଧାନ
୧୯.୫.୨୦୦୩

**ନନ୍ଦ କିଶୋର ସାମଲ ସ୍ମୃତିନ୍ୟାସ**

**କୁସୁପୁର, କଟକ**



"ଝିଅ ଜନମ ପର ଘରକୁ ନୁହେଁ,
ପୁଅ ଜନମ ପର ଘରକୁ !"

**ସେଇଥି ପାଇଁ ତ' ନାଟ୍ୟ ଜଗତରେ**
**ଚହଲ ପକାଇ ଗହଳି କରୁଛି**

**ଅରୁଣ ସାହୁ ନିବେଦିତ :**

# ଘର ଜୋଇଁଥା

ରଚନା ଓ ନିର୍ଦ୍ଦେଶନା - **ଅନନ୍ତ ଓଝା**

ପ୍ରସ୍ତୁତି : ଯାତ୍ରା ଟାଇଗର, **ତାରିଣୀ ଗଣନାଟ୍ୟ**

ସମ୍ପର୍କ

**ସାବିତ୍ରୀ ପିକ୍‌ଚର୍ସ**
ଅରୁଣୋଦୟ ନଗର, କଟକ - ୧୨
ଫୋନ -(୦୬୭୧) ୨୩୩୪୪୯୪

# ସ୍ମୃତି ଅର୍ଘ୍ୟ



ସମ୍ପାଦକ
**ଡକ୍ଟର ବସନ୍ତ କିଶୋର ସାହୁ**

ସହ-ସମ୍ପାଦକ
**ଡକ୍ଟର ଇନ୍ଦୁପ୍ରଭା ସାମଲ**
**ଶ୍ରୀ ସଦାନନ୍ଦ ସାହୁ**
**ଶ୍ରୀ ସୁକୁମାର ସାମଲ**

ପ୍ରକାଶକ
**ନନ୍ଦ କିଶୋର ସାମଲ ସ୍ମୃତି ନ୍ୟାସ**
କୁସୁପୁର, କଟକ

ଅକ୍ଷର ଓ ମୁଦ୍ରଣ
**ପୂର୍ଣ୍ଣିମା ଅଫ୍‌ସେଟ ପ୍ରିଣ୍ଟର୍ସ**
ସେମିଳିଗୁଡା, କୋରାପୁଟ
ଫୋନ - (୦୬୮୫୩) ୨୨୫୮୬୦

ସୌଜନ୍ୟ ସହଯୋଗ
**କୋଡିଏ ଟଙ୍କା**

## SMRUTI ARGHYA

Editor
**Dr. Basanta Ki. Sahoo**

Asst. Editor
**Dr. Induprava Samal**
**Sri Sadananda Sahoo**
**Sri Sukumar Samal**

Publisher
**Nanda Kishore Samal**
**Smruti Nyasa**
Kusupur, Cuttack

D.T.P. & Printing
**Purnima Offset Printers**
Semiliguda
Ph - (06853)225860

Courtsy Help
**Rs. 20.00**



# ନନ୍ଦକିଶୋର ସାମଲ ସ୍ମୃତିନ୍ୟାସ

ବର୍ଷା ନିଳୟମ, କୁସୁପୁର, କଟକ-୭୫୪ ୨୮୫
ଫୋନ -୦୬୭୧-୨୭୬୮୭୨୫
ମୋବାଇଲ-୯୪୩୭୨୩୭୩୭୦

ଉପଦେଷ୍ଟା
ଶ୍ରୀଯୁକ୍ତ ବ୍ରଜନାଥ ରଥ
ଡକ୍ଟର ମହେଶ୍ୱର ମହାନ୍ତି
ଡାକ୍ତର ଅକ୍ଷୟ କୁମାର ଜେନା
ଶ୍ରୀ ଅରୁଣ କୁମାର ପଣ୍ଡା
ଡକ୍ଟର ସତ୍ୟାନନ୍ଦ ସ୍ୱାଇଁ
ଡାକ୍ତର ବସନ୍ତ କିଶୋର ଜେନା
ଡକ୍ଟର ବିଜୟାନନ୍ଦ ସିଂହ

ସଭାପତି
ଶ୍ରୀ ପ୍ରଦୀପ୍ତ କିଶୋର ସାମଲ

କାର୍ଯ୍ୟକାରୀ ସଭାପତି
ଶ୍ରୀଯୁକ୍ତ ବଳରାମ ସାହୁ

ଉପ-ସଭାପତି
ଡକ୍ଟର କୈଳାସଚନ୍ଦ୍ର ବେହେରା
ଶ୍ରୀଯୁକ୍ତ ସୂର୍ଯ୍ୟମଣି ସାମନ୍ତରାୟ

ସାଧାରଣ ସଂପାଦକ
ଶ୍ରୀ ସଦାନନ୍ଦ ସାହୁ

ସଂପାଦକ (ପ୍ରକାଶନ)
ଡକ୍ଟର ବସନ୍ତ କିଶୋର ସାହୁ
ଡକ୍ଟର ଇନ୍ଦୁପ୍ରଭା ସାମଲ

ସଂପାଦକ (କଳା, ପ୍ରଚାର ଓ ପ୍ରସାର)
ଶ୍ରୀ ଅରୁଣ କୁମାର ସାହୁ
ଶ୍ରୀ ଶ୍ରୀବନ୍ତ ଜେନା

ସହ ସଂପାଦକ
ଶ୍ରୀ କୈଳାସଚନ୍ଦ୍ର ମହାନ୍ତି
ଶ୍ରୀ ଶାରଦା ପ୍ରସନ୍ନ ମହାନ୍ତି

କୋଷାଧ୍ୟକ୍ଷ
ଶ୍ରୀ ସୁକୁମାର ସାମଲ

## ଯୋଗାଯୋଗ

**ଶ୍ରୀ ସଦାନନ୍ଦ ସାହୁ**, ସାଧାରଣ ସଂପାଦକ
ମହମ୍ମଦିଆ ବଜାର, ମେନ୍‌ରୋଡ, କଟକ-୭୫୩ ୦୦୨
ଫୋନ -୦୬୭୧-୨୬୦୭୨୭୧

**ଡଃ ବସନ୍ତ କିଶୋର ସାହୁ**,
ଘର ନଂ - ଏ/୧୧, ସୁନାବେଡା, କୋରାପୁଟ-୭୬୩ ୦୦୨
ଫୋନ : (୦୬୮୫୩) ୨୨୨୦୭୮, e-mail:basanta25@sancharnet.in

**ଶ୍ରୀମତୀ ମମତା ସାମଲ**, ବର୍ଷାନିଳୟମ
କୁସୁପୁର, କଟକ-୭୫୪ ୨୮୫
ଫୋନ -୦୬୭୧-୨୭୬୮୭୨୫, ମୋ -୯୪୩୭୨୩୭୩୭୦

## "ନନ୍ଦକିଶୋର ସାମଲ ସ୍ମୃତିନ୍ୟାସ" ଲକ୍ଷ୍ୟ ଓ ଉଦ୍ଦେଶ୍ୟ

୧ ॥ ନନ୍ଦ କିଶୋର ସାମଲଙ୍କ ସମସ୍ତ କୃତିକୁ – ନନ୍ଦକିଶୋର ରଚନାବଳୀ ନାମରେ ପ୍ରକାଶ କରିବା ।

୨॥ ନନ୍ଦ କିଶୋର ସାମଲଙ୍କ ପୂର୍ବ ପ୍ରକାଶିତ ଦୁର୍ଷ୍ପ୍ରାପ୍ୟ ପୁସ୍ତକ ସମୂହର ପୁନଃ ପ୍ରକାଶ କରିବା ।

୩॥ ଓଡ଼ିଆ ଶିଶୁ ସାହିତ୍ୟକୁ ନନ୍ଦକିଶୋର ସାମଲଙ୍କ ଅବଦାନ ଶୀର୍ଷକ ଗବେଷଣା ନିବନ୍ଧର ପ୍ରକାଶ କରିବା ।

୪॥ ନନ୍ଦ କିଶୋର ସାମଲଙ୍କ ଅନ୍ୟାନ୍ୟ କୃତିର ମୂଲ୍ୟାଙ୍କନ ପାଇଁ ଗବେଷକ ନିଯୁକ୍ତି ଓ ତଥ୍ୟ ପ୍ରଦାନ କରିବା ।

୫॥ ପ୍ରତି ବର୍ଷ ଜନ୍ମ ଜୟନ୍ତୀରେ ନନ୍ଦକିଶୋର ସାମଲ ସାହିତ୍ୟ ସମୀକ୍ଷା ପୁସ୍ତକ ପ୍ରକାଶ କରିବା ।

୬॥ ପ୍ରତି ବର୍ଷ ଶ୍ରାଦ୍ଧ ବାର୍ଷିକରେ ଭକ୍ତି ଅର୍ଘ୍ୟ ପ୍ରକାଶ କରିବା ।

୭॥ ପ୍ରତି ବର୍ଷ ଶ୍ରାଦ୍ଧ ବାର୍ଷିକରେ – ପୂର୍ବ ବର୍ଷ ପ୍ରକାଶିତ ଶ୍ରେଷ୍ଠ ଶିଶୁ ସାହିତ୍ୟ ପୁସ୍ତକକୁ **ନନ୍ଦକିଶୋର ସାମଲ ଶିଶୁ–ସାହିତ୍ୟ ସମ୍ମାନ** ପ୍ରଦାନ କରିବା ।

୮॥ ପ୍ରତି ବର୍ଷ ଜନ୍ମ ଦିବସରେ ଜଣେ ଆଦର୍ଶ ଶିକ୍ଷକଙ୍କୁ **ନନ୍ଦ କିଶୋର ସାମଲ ସ୍ମୃତି ସମ୍ମାନ** ପ୍ରଦାନ କରିବା ।

୯॥ ନନ୍ଦ କିଶୋର ସାମଲଙ୍କ ରଚନାକୁ ନେଇ କ୍ୟାସେଟ, ସିଡି, ଭି.ସିଡି ଓ ସିରିଏଲ ନିର୍ମାଣ ପାଇଁ ପଦକ୍ଷେପ ଗ୍ରହଣ କରିବା ।

୧୦॥ ଛାତ୍ର ଛାତ୍ରୀ, ପାଠକ/ପାଠିକାମାନଙ୍କ ମଧ୍ୟରେ ନନ୍ଦ କିଶୋର ସାମଲଙ୍କୁ ପରିଚିତ କରାଇବା ପାଇଁ ଉପଯୁକ୍ତ ବାତାବରଣ ସୃଷ୍ଟି କରିବା ।

୧୧॥ ନନ୍ଦ କିଶୋର ସାମଲଙ୍କ ପ୍ରକାଶିତ କେତେକ ପୁସ୍ତକର ହିନ୍ଦୀ ଓ ଅନ୍ୟାନ୍ୟ ଭାରତୀୟ ଭାଷାରେ ଅନୁବାଦ କରି ପ୍ରକାଶ କରିବା ।

ଏହି ସମସ୍ତ କାର୍ଯ୍ୟକୁ ସଫଳ କରିବା ପାଇଁ ସମସ୍ତ ନନ୍ଦକିଶୋର ସାମଲ ପ୍ରେମୀ ଆଗେଇ ଆସିବାକୁ ଅନୁରୋଧ । ଏ ଦିଗରେ ତାଙ୍କର ସମସ୍ତ ଶୁଭେଚ୍ଛୁ, ବନ୍ଧୁ ଓ ଛାତ୍ର ସହଯୋଗର ହାତ ବଢ଼ାଇଲେ ନିଶ୍ଚୟ ଆମେ ସଫଳ ହୋଇ ପାରିବା । ଶେଷରେ ସମସ୍ତଙ୍କର ସହଯୋଗ କାମନା କରି ରହୁଛୁ ।

**ଶ୍ରୀ ସଦାନନ୍ଦ ସାହୁ**

**ଶ୍ରୀ ସୁକୁମାର ସାମଲ** **ଡକ୍ଟର ବସନ୍ତ କିଶୋର ସାହୁ**

## ନନ୍ଦ କିଶୋର ସାମଲ ସ୍ମୃତି ନ୍ୟାସ ତରଫରୁ ପ୍ରଦତ୍ତ
## କବି ନନ୍ଦ କିଶୋର ସାମଲ ସ୍ମୃତି ସମ୍ମାନ-୨୦୦୫

ନନ୍ଦ କିଶୋର ସାମଲ ସ୍ମୃତି ନ୍ୟାସର ଅନେକ ଆଭିମୁଖ୍ୟ ମଧ୍ୟରୁ ଓଡିଶାର ପ୍ରତିଷ୍ଠିତ ସାହିତ୍ୟିକ, ଆଦର୍ଶ ଶିକ୍ଷକ ଓ ପ୍ରତିଭାବାନ କଳାକାରଙ୍କ କବି ନନ୍ଦ କିଶୋର ସାମଲ ସ୍ମୃତି ସମ୍ମାନ-୨୦୦୫ ପ୍ରଦାନ କରିବାକୁ ସ୍ଥିର କରାଯାଇଅଛି। ଏହି ପରିପ୍ରେକ୍ଷୀରେ ଗତ ବର୍ଷ ପ୍ରତିଷ୍ଠିତ ଶିଶୁ ସାହିତ୍ୟିକ ଶ୍ରୀଯୁକ୍ତ ରାଜ କିଶୋର ପାଢୀ ଏବଂ ଆଦର୍ଶ ଶିକ୍ଷକ ଶ୍ରୀଯୁକ୍ତ ପିତାମ୍ବର ଶରଣ ଙ୍କୁ ଏହି ସମ୍ମାନ ପ୍ରଦାନ କରାଯାଇଥିଲା।

ଏ ବର୍ଷର ୨ୟ ଶ୍ରାଦ୍ଧ ବାର୍ଷିକରେ ଅନେକଙ୍କ ମତ ଓ ଉପଦେଶକୁ ଗ୍ରହଣ କରି ସାଂପ୍ରତିକ ସମୟର ପ୍ରତିଭାବାନ ତଥା ପ୍ରତିଷ୍ଠିତ କବି ଶ୍ରୀଯୁକ୍ତ ବ୍ରଜନାଥ ରଥଙ୍କୁ କବି ନନ୍ଦ କିଶୋର ସାମଲ ସାରସ୍ୱତ ସମ୍ମାନ ପ୍ରଦାନ କରିବାକୁ ନିଷ୍ପତ୍ତି ନିଆଯାଇଛି। ସେହିପରି ଆମ ଅଞ୍ଚଳର ପ୍ରତିଷ୍ଠିତ କଳାକାର, ସମାଜସେବୀ ଓ ନାଟ୍ୟ ନିର୍ଦ୍ଦେଶକ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ସାହୁଙ୍କୁ କବି ନନ୍ଦ କିଶୋର ସାମଲ ପ୍ରତିଭା ସମ୍ମାନ ଏବଂ ଆଦର୍ଶ ଶିକ୍ଷକ ଶ୍ରୀଯୁକ୍ତ ଶରତ ଚନ୍ଦ୍ର ତ୍ରିପାଠୀଙ୍କୁ କବି ନନ୍ଦ କିଶୋର ସାମଲ ସ୍ମୃତି ସମ୍ମାନ ପ୍ରଦାନ କରାଯିବା ପାଇଁ ସ୍ଥିର ହୋଇଅଛି।

"ଭକ୍ତି ଅର୍ଘ୍ୟ" ପ୍ରକାଶ ଅବସରରେ ସେହି ପ୍ରତିଭା ମାନଙ୍କ ପ୍ରତିଭାକୁ ଆମର ବାରବାର ପ୍ରଣାମ୍।

ଉତ୍କଳର ଆରାଧ୍ୟ ଦେବତା ଶ୍ରୀ ଜଗନ୍ନାଥ ଆପଣମାନଙ୍କୁ ଦୀର୍ଘ ନିରୋଗ ଓ ସାଧନାମୟ ଜୀବନ ପ୍ରଦାନ କରନ୍ତୁ। ଆପଣମାନଙ୍କ ଐକାନ୍ତିକ ନିଷ୍ଠା ଓ ନିରଳସ ସାଧନା ଦୀର୍ଘଜୀବି ହେଉ। ଏହା ହିଁ କାମନା।

ଧୀରେନ୍ଦ୍ର କୁମାର ସାହୁ



# ନନ୍ଦକିଶୋର ସାମଲ ସ୍ମୃତିନ୍ୟାସ

କୁସୁପୁର, କଟକ-୭୫୪ ୨୮୫

## କବି ନନ୍ଦକିଶୋର ସାମଲ ସ୍ମୃତି ସମ୍ମାନ-୨୦୦୫

### ବରେଣ୍ୟ କବି ଶ୍ରୀଯୁକ୍ତ ବ୍ରଜନାଥ ରଥ

ମହାଶୟ,

ଦୀର୍ଘ ଅର୍ଦ୍ଧ ଶତାବ୍ଦୀରୁ ଊର୍ଦ୍ଧ୍ୱ କାଳ ଧରି ସାହିତ୍ୟ ସାଧନା ଅବ୍ୟାହତ ରଖି ଆପଣ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ପ୍ରଗତିଶୀଳ ଓ ମାନବବାଦୀ ଚିନ୍ତାଧାରାର ଜଣେ ସଫଳ ସାହିତ୍ୟ ସ୍ରଷ୍ଟା ଭାବରେ ଆପଣ ସୁଖ୍ୟାତ । କାବ୍ୟ ଶିଳ୍ପୀ ଭାବରେ ଓଡ଼ିଆ କବିତା ରାଜ୍ୟରେ ଆପଣ ଯେପରି ନୂତନ ସ୍ୱାକ୍ଷର ଅଙ୍କନ କରିଛନ୍ତି, ସେହିପରି ଅନୁବାଦ କ୍ଷେତ୍ରରେ ଆପଣଙ୍କର ଭୂମିକା ଅନନ୍ୟ । ସଂଗଠନ କ୍ଷେତ୍ରରେ ଆପଣ ସୃଷ୍ଟି କରିଛନ୍ତି ଏକ ନୂତନ ପରମ୍ପରା ।

ଆପଣଙ୍କର ଏହି ସାରସ୍ୱତ ଅବଦାନକୁ ସ୍ମରଣ କରି ଆମେ ଆପଣଙ୍କୁ 'କବି ନନ୍ଦକିଶୋର ସାମଲ ସ୍ମୃତି ସମ୍ମାନ' ପ୍ରଦାନ କରି ନିଜକୁ ଗୌରବାନ୍ୱିତ ମନେ କରୁଅଛୁ ।

| | | |
|---|---|---|
| ସଦାନନ୍ଦ ସାହୁ | ଡକ୍ଟର ବିଜୟାନନ୍ଦ ସିଂହ | ବଳରାମ ସାହୁ |
| ସାଧାରଣ ସଂପାଦକ | ଉପଦେଷ୍ଟା | ସଭାପତି |

ତାରିଖ : ୧୯।୦୫।୨୦୦୫



# ନନ୍ଦକିଶୋର ସାମଲ ସ୍ମୃତିନ୍ୟାସ

କୁସୁପୁର, କଟକ-୭୫୪ ୨୮୫

## କବି ନନ୍ଦକିଶୋର ସାମଲ ସ୍ମୃତି ସମ୍ମାନ-୨୦୦୫

### ନାଟ୍ୟ ନିର୍ଦ୍ଦେଶକ, ସମାଜସେବୀ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ସାହୁ

ମହାଶୟ,

ବିଶିଷ୍ଟ ସମାଜସେବୀ ଓ ନାଟ୍ୟ ନିର୍ଦ୍ଦେଶକ ଭାବରେ ଆପଣ ଆମ ଅଞ୍ଚଳରେ ସୁପରିଚିତ । ପଲ୍ଲୀର ବିକାଶ ପାଇଁ ଆପଣଙ୍କର ନିରନ୍ତର ପ୍ରଚେଷ୍ଟାର ତୁଳନା ନାହିଁ । ସାଧାରଣ ମଣିଷର ଜୀବନଧାରାରେ ନବଚେତନା ସୃଷ୍ଟି କରିବା ସହ ବିଭିନ୍ନ ସାରସ୍ୱତ ସଭା, ଆଧ୍ୟାତ୍ମିକ ସମ୍ମେଳନ ଆୟୋଜନ କରି ଗ୍ରାମ୍ୟ ଜୀବନରେ ସୃଷ୍ଟି କରିଛନ୍ତି ଆପଣ ଏକ ନୂତନ ପରମ୍ପରା । ନାଟକ ଆପଣଙ୍କ ଜୀବନର ଆଉ ଏକ ପରିଚୟ । ନାଟ୍ୟ ନିର୍ଦ୍ଦେଶନା କ୍ଷେତ୍ରରେ ଆପଣଙ୍କର ଭୂମିକା ପ୍ରଶଂସନୀୟ ।

ଆପଣଙ୍କର ଏହି ସ୍ମରଣୀୟ ଅବଦାନକୁ ସ୍ୱୀକାର କରି ଆମେ ଆପଣଙ୍କୁ 'କବି ନନ୍ଦକିଶୋର ସାମଲ ସ୍ମୃତି ସମ୍ମାନ' ପ୍ରଦାନ କରି ନିଜକୁ ଗୌରବାନ୍ୱିତ ମନେ କରୁଅଛୁ ।

| | | |
|---|---|---|
| ସଦାନନ୍ଦ ସାହୁ | ଡକ୍ଟର ବିଜୟାନନ୍ଦ ସିଂହ | ବଳରାମ ସାହୁ |
| ସାଧାରଣ ସଂପାଦକ | ଉପଦେଷ୍ଟା | ସଭାପତି |

ତାରିଖ ୧୯।୦୫।୨୦୦୫



# ନନ୍ଦକିଶୋର ସାମଲ ସ୍ମୃତିନ୍ୟାସ

କୁସୁପୁର, କଟକ-୭୫୪ ୨୮୫

## କବି ନନ୍ଦକିଶୋର ସାମଲ ସ୍ମୃତି ସମ୍ମାନ-୨୦୦୫

### ଆଦର୍ଶ ଶିକ୍ଷକ ଶ୍ରୀଯୁକ୍ତ ଶରତ ଚନ୍ଦ୍ର ତ୍ରିପାଠୀ

ମହାଶୟ,

ଓଡ଼ିଶାରେ ଶିକ୍ଷା ଓ ଶିକ୍ଷାୟତନର ବିକାଶ ପାଇଁ ଆପଣଙ୍କ ସମଗ୍ର ଜୀବନ ସମର୍ପିତ । ଜଣେ ଛାତ୍ର ବତ୍ସଳ ଶିକ୍ଷକ ଭାବେ ଆପଣ ସୁପରିଚିତ । ଆଦର୍ଶ ଶିକ୍ଷକ ହୋଇ ଆପଣ ସୃଷ୍ଟି କରିଛନ୍ତି ଅନେକ କୃତି ଛାତ୍ର । ଆପଣ ସ୍ନେହ, ଶ୍ରଦ୍ଧା ଓ ଆତ୍ମୀୟତାରେ ଯେପରି ଛାତ୍ରମାନଙ୍କୁ ଆପଣେଇ ନିଅନ୍ତି ତା'ର ପଟାନ୍ତର ନାହିଁ ।

ଆପଣଙ୍କର ଏହି ମହନୀୟ ଅବଦାନକୁ ସ୍ମରଣ କରି ଆମେ ଆପଣଙ୍କୁ 'କବି ନନ୍ଦକିଶୋର ସାମଲ ସ୍ମୃତି ସମ୍ମାନ' ପ୍ରଦାନ କରି ନିଜକୁ ଗୌରବାନ୍ୱିତ ମନେ କରୁଅଛୁ ।

| ସଦାନନ୍ଦ ସାହୁ | ଡକ୍ଟର ବିଜୟାନନ୍ଦ ସିଂହ | ବଳରାମ ସାହୁ |
|---|---|---|
| ସାଧାରଣ ସଂପାଦକ | ଉପଦେଷ୍ଟା | ସଭାପତି |

ତାରିଖ : ୧୯।୦୫।୨୦୦୫

# ଶ୍ରଦ୍ଧାଞ୍ଜଳି

ଓଡ଼ିଆ ଭାଷା ସାହିତ୍ୟର ଅନେକ ପ୍ରତିଭା ଏହି ବର୍ଷକ ମଧ୍ୟରେ ଆମ ଠାରୁ ବିଦାୟ ନେଇଛନ୍ତି ।

ସେମାନେ ହେଲେ–

ସଚ୍ଚିଦାନନ୍ଦ ରାଉତରାୟ

କିଶୋରୀ ଚରଣ ଦାସ

ଗୁରୁପ୍ରସାଦ ମହାନ୍ତି

ରାମନାଥ ପଣ୍ଡା

ପୂର୍ଣ୍ଣାନନ୍ଦ ଦାନି

ଚିନ୍ତାମଣି ବେହେରା

ତା ସହିତ କବି ନନ୍ଦକିଶୋର ସାମଲଙ୍କ ଧର୍ମପତ୍ନୀ

**ଶ୍ରୀମତୀ ରେବା ଦେଈ**

ଏବଂ ତାଙ୍କ ସହକର୍ମୀ

**ଗୌରାଙ୍ଗ ଚରଣ ଧଳ** ଏବଂ

**ନାରାୟଣ ଚନ୍ଦ୍ର ମହାନ୍ତି** ମଧ୍ୟ ଏ ମଧ୍ୟରେ ଆମ ଠାରୁ ବିଦାୟ ନେଇଛନ୍ତି ।

ସ୍ମୃତିନ୍ୟାସ ସମସ୍ତ ଦିବଂଗତ ଆତ୍ମା ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

କାର୍ଯ୍ୟକାରୀ କମିଟି

**ନନ୍ଦ କିଶୋର ସାମଲ ସ୍ମୃତିନ୍ୟାସ**



## ସଂପାଦକୀୟ...



**ଯା**ହାଙ୍କ ପବିତ୍ର ସ୍ମୃତି ପାଇଁ ଆଜିର ଏହି ଆୟୋଜନ ଓ 'ସ୍ମୃତି ଅର୍ଘ୍ୟ' ପ୍ରକାଶ– ସେହି ଦିବଂଗତ ଆତ୍ମାଙ୍କୁ ମୋର ବାରବାର ପ୍ରଣାମ–ଆଉ ତାଙ୍କର ସୃଷ୍ଟିକୁ ମଧ । ସେ ଲେଖିଛନ୍ତି –

ଭାରି ଭଲ ଲାଗେ ମତେ ମୋ ଗାଁ      ଆଲୁଅ ପବନ ତାର<br>
ଯେଉଁଠି ରହିଲେ ଯୁଆଡ଼େ ଗଲେ      ମନେ ପଡ଼ିଯାଏ ମୋର ।

ଏହି ଦୁଇ ଧାଡ଼ି କବିତା ମଧରେ ଭରି ରହିଛି ଚିରନ୍ତନ ସତ୍ୟ–ଗାଁ, ମାଟି, ପାଣି, ପବନ ପ୍ରତି ମମତା–ଜନ୍ମମାଟି ପ୍ରତି ଅହେତୁକ ଆକର୍ଷଣ । କବି ନନ୍ଦକିଶୋର ସାମଲ ଏଠି ଯେଉଁ ଗାଁ କଥା କହିଛନ୍ତି–ସେହି ଗାଁ କୁସୁପୁର । ଓଡ଼ିଶାର ସାରସ୍ୱତ ପୀଠ–କବି, କଳାକାରଙ୍କର ପୀଠ । କେବଳ କବି ନନ୍ଦକିଶୋର ସାମଲଙ୍କୁ ନୁହେଁ, ତାଙ୍କର ପୂର୍ବସୂରୀ ପଲ୍ଲୀକବି ନନ୍ଦକିଶୋର ବଳ, ଶିକ୍ଷାଗୁରୁ ବିଦ୍ୟାଧର ବର୍ମା, ଔପନ୍ୟାସିକ ରାଜେନ୍ଦ୍ର ବର୍ମା, କବି ଜ୍ଞାନୀନ୍ଦ୍ର ବର୍ମା, ବିଦୁଷୀ ଲବଙ୍ଗଲତା ଦେବୀ, ସ୍ୱାଧୀନତା ସଂଗ୍ରାମୀ ତଥା ମାହାତ୍ମା ଗାନ୍ଧୀ ସଚ୍ଚିଦାନନ୍ଦ ଜେନା, ସାଂସଦ, ସାମ୍ବାଦିକ ତଥା ସଂପାଦକ ପ୍ରଦ୍ୟୁମ୍ନ କିଶୋର ବଳ ଆଦି ଅନେକ ପ୍ରତିଭାଧର ବ୍ୟକ୍ତିଙ୍କୁ ଜନ୍ମ ଦେଇଛି । ସମସ୍ତେ ନିଜ ନିଜ କ୍ଷେତ୍ରରେ ପ୍ରତିଭା ଅର୍ଜନ କରି ନିଜକୁ ପ୍ରତିଷ୍ଠିତ କରିବା ସହିତ 'କୁସୁପୁର' ଗାଁ କୁ ଧନ୍ୟ କରିଛନ୍ତି ।

ପରିବର୍ତ୍ତିତ ପରିସ୍ଥିତିରେ କୁସୁପୁରର ପରିବେଶ ଆଜି ବଦଳି ଗଲାଣି–ଆଜି ସ୍ୱରୂପା ବିରୂପା ଆଉ କୁଳୁ କୁଳୁ ଗୀତ ଗାଉନାହିଁ–କେବେଠୁ ତାର ମୁହାଣ ପୋତି ହୋଇ ଗଲାଣି । ଚିର ସବୁଜିମାମୟ ଘୁମନ୍ତ ବହଡ଼ିଅ ଆଉ ଲଳିତଗିରି ପାହାଡ଼ର ସେ ସବୁଜ ସୁଷମା ଆଜି ନାହିଁ–ଗାଁର ନୁଆଁଣିଆ ଚାଳଘର ଆଜି ତ୍ରିତଳ ପ୍ରସାଦରେ ପରିଣତ ହୋଇଛି । ଇଟିଆ କୁଦ, ପିଙ୍କୁଜେଇ ବନ୍ଧ, ନଇ ପଠା ଆଜି ବିପର୍ଯ୍ୟସ୍ତ ଓ ଛନ୍ନଭିନ୍ନ ହୋଇଛି–ମାତ୍ର କାଳର କଷଟି ପଥରରେ ଏ ମାଟିର ସନ୍ତାନମାନେ ଯେଉଁ ପ୍ରତିଭାର ବିକାଶ ଘଟାଇଛନ୍ତି–ସେ ସବୁକୁ ମହାକାଳ ଧୋଇ ପାରି ନାହିଁ–ଧୋଇ ମଧ ପାରିବ ନାହିଁ । ସେମାନେ ସମସ୍ତେ ହୋଇଛନ୍ତି କାଳଜୟୀ । ସେମାନଙ୍କ ସୃଷ୍ଟି ଅଛି ଆମ ଭିତରେ–ଆମ ଆତ୍ମାରେ ଓ ପ୍ରାଣରେ । ସେ ସବୁକୁ ସ୍ମରଣ କଲେ କୁସୁପୁର ମାଟିର ଐଶ୍ୱରିକ ସତ୍ତା ପ୍ରତି ବିଶ୍ୱାସ ଆସେ । ଅନେକ ସମୟରେ

ସାହିତ୍ୟିକ ବଂଧୁମାନଙ୍କ ତୁଣ୍ଡରେ କୁସୁପୁର ଗାଁର ପ୍ରଶଂସା ଶୁଣିଲେ ଛାତି କୁଣ୍ଢେମୋଟ ହୋଇଯାଏ – ଜନ୍ମମାଟି କୁସୁପୁରର ମାଟିକୁ ବାରବାର ମୁଣ୍ଡେରେ ମାରିବାକୁ ମନ ହୁଏ ।

ନନ୍ଦକିଶୋର ସାମଲ ଓଡ଼ିଆ ସାହିତ୍ୟର ଏକ ସ୍ମରଣୀୟ ପ୍ରତିଭା । ଜଣେ ଶିଶୁ ସାହିତ୍ୟିକ ଭାବରେ ଓଡ଼ିଶା ସାହିତ୍ୟ ଏକାଡେମୀ ତାଙ୍କୁ ପୁରସ୍କୃତ କରିଥିଲେ ହେଁ, ସେ ଜଣେ ସଫଳ ଗୀତିକାର, ପ୍ରତିଷ୍ଠିତ କବି ଓ ନାଟ୍ୟକାର ଥିଲେ । ତାଙ୍କ ସୃଷ୍ଟିର ପ୍ରକୃତ ମୂଲ୍ୟାୟନ ଓ ଗବେଷଣା ନହେଲା ପର୍ଯ୍ୟନ୍ତ ସେ ଆମ ନିକଟରେ କେବଳ ତାଙ୍କ 'ଆମ ଘର' କବିତା ପାଇଁ ସ୍ମରଣୀୟ ହୋଇ ରହିବେ । ତାଙ୍କ ସାହିତ୍ୟ ସାଧନା ଦୀର୍ଘ ଚାରି ଦଶନ୍ଧି ଧରି ଅବ୍ୟାହତ ରହିଥିଲା । ମାତ୍ର, ଉପଯୁକ୍ତ ମୂଲ୍ୟାୟନ ହୋଇ ନଥିବାରୁ ତାଙ୍କ ପ୍ରତିଭାକୁ ଆମେ ଠିକ୍ ଭାବେ ଚିହ୍ନି ପାରି ନାହୁଁ । ନନ୍ଦକିଶୋର ସାମଲ ସ୍ମୃତିନ୍ୟାସ –'ନନ୍ଦକିଶୋର ସାହିତ୍ୟ ସମୀକ୍ଷା' ଓ ରଚନାବଳୀ ପ୍ରକାଶ ପାଇଁ ସଂକଳ୍ପବଦ୍ଧ । ଏହା ସଫଳ ହେଲେ କିଛିଟା ତଥ୍ୟ ଲୋକଲୋଚନକୁ ଆସି ପାରିବ । ବର୍ତ୍ତମାନ ସୁଦ୍ଧା 'ଓଡ଼ିଆ ଶିଶୁ ସାହିତ୍ୟକୁ ନନ୍ଦକିଶୋର ସାମଲଙ୍କ ଅବଦାନ' ଶୀର୍ଷକରେ ଡକ୍ଟର ଜ୍ୟୋତିର୍ମୟୀ ରାଜଗୁରୁ ଗବେଷଣା କରି ସଫଳ ହୋଇଛନ୍ତି । ଗବେଷଣା ନିବନ୍ଧଟି ମଧ୍ୟ ପ୍ରକାଶ ପାଇନାହିଁ । ଏହା ପ୍ରକାଶ ପାଇଲେ ନନ୍ଦକିଶୋରଙ୍କ ଶିଶୁ ସାହିତ୍ୟର ବ୍ୟାପ୍ତି ଓ ବୈଚିତ୍ର୍ୟ ଜଣାପଡ଼ିବ ।

'ଭକ୍ତିଅର୍ଘ୍ୟ' ପ୍ରକାଶ ପାଇଁ ଅନେକ ଉପାଦେୟ ଲେଖା ଆମର ହସ୍ତଗତ ହୋଇଥିଲେ ହେଁ ସମୟର ସ୍ୱଳ୍ପତା ଦୃଷ୍ଟିରୁ ସେ ସମସ୍ତ ଏଥିରେ ପତ୍ରସ୍ଥ ହୋଇ ପାରିନାହିଁ । ସେ ସବୁକୁ ପରବର୍ତ୍ତୀ ସମୟରେ ସ୍ଥାନ ଦେବୁ ବୋଲି ଆଶା ରଖିଛୁ । ଆଶା ଲେଖକ ବଂଧୁମାନେ ଆମକୁ କ୍ଷମା ପ୍ରଦାନ କରିବେ ।

'ଭକ୍ତିଅର୍ଘ୍ୟ'ର ପ୍ରକାଶ ସୀମିତ ସମୟ ମଧ୍ୟରେ କରାଯାଇଛି । ଆମ ଅଜାଣତରେ କିଛି ନା କିଛି ମୁଦ୍ରଣଜନିତ ତ୍ରୁଟି ଏଥିରେ ନିଶ୍ଚୟ ରହିଥିବ–ସେଥିପାଇଁ ସହୃଦୟ ପାଠକ ଗଣ ଆମକୁ ଉଦାର ଚିତ୍ତରେ କ୍ଷମା ପ୍ରଦାନ କରିବେ ବୋଲି ଆଶା । ପୂର୍ଣ୍ଣିମା ଅଫ୍‌ସେଟ ପ୍ରେସ୍‌ର ମାଲିକ ତଥା କର୍ମଚାରୀଙ୍କ ଅକୁଣ୍ଠ ସହଯୋଗ ହେତୁ ପୁସ୍ତକଟି ଯଥା ସମୟରେ ପ୍ରକାଶ ପାଇ ପାରିଛି । ସେଥିପାଇଁ ସଂସ୍ଥାର ସମସ୍ତଙ୍କୁ ସାଧୁବାଦ ଜଣାଉଛି ।

'ଭକ୍ତିଅର୍ଘ୍ୟ' ପ୍ରକାଶ ପାଇଁ ଯେଉ ବଦାନ୍ୟ ବ୍ୟକ୍ତି ଓ ଅନୁଷ୍ଠାନମାନେ ସେମାନଙ୍କର ବିଜ୍ଞାପନ ପ୍ରଦାନ କରି ଆମକୁ ଅନୁଗୃହୀତ କରିଛନ୍ତି ଏହି ଅବସରରେ ସେମାନଙ୍କୁ ମୁଁ ସାଧୁବାଦ ଜଣାଉଛି ।

ଶେଷରେ ପୁଣି ଥରେ ସେହି ଦିବଗଂତ ଆତ୍ମାଙ୍କୁ ନମସ୍କାର ଜଣାଇ ରହୁଛି ।

ଧରିତ୍ରୀ କନ୍ୟାଙ୍କ ରାଉ

# ସାଧାରଣ ସଂପାଦକଙ୍କ କଲମରୁ ...



ମାନନୀୟ ସଭାପତି ମହୋଦୟ, ସମ୍ମାନନୀୟ ମୁଖ୍ୟ ଅତିଥି ବିଶିଷ୍ଟ ଶିଶୁ ସାହିତ୍ୟିକ ଶ୍ରୀଯୁକ୍ତ ନଦୀୟା ବିହାରୀ ମହାନ୍ତି ମହୋଦୟ, ସମ୍ମାନିତ ଅତିଥି ବିଶିଷ୍ଟ ସାହିତ୍ୟିକ ପ୍ରଫେସର ଡକ୍ଟର ବୈଷ୍ଣବ ଚରଣ ସାମଲ ମହୋଦୟ, ମୁଖ୍ୟବକ୍ତା ବିପ୍ଳବୀ କବି ଡକ୍ଟର ହୁସେନ ରବି ଗାନ୍ଧୀ ମହୋଦୟ, ଆଜିର ସମ୍ବର୍ଦ୍ଧିତ ଓ ସମ୍ମାନିତ ଅତିଥି ବୃନ୍ଦ, କୁସୁପୁର ଗ୍ରାମର ସଜ୍ଜନ ମଣ୍ଡଳୀ ତଥା ନନ୍ଦକିଶୋର ସାମଲ ପ୍ରେମୀ ସାହିତ୍ୟିକ, କବି, ସମାଲୋଚକ ତଥା ସାହିତ୍ୟପ୍ରେମୀ ବନ୍ଧୁ ଗଣ ।

ପ୍ରଥମେ ମୁଁ ଆପଣମାନଙ୍କୁ ଅଭିନନ୍ଦନ ଜଣାଉଛି–ଆମର ପ୍ରିୟ ଶିକ୍ଷକ ଓଡ଼ିଶାର ଜନପ୍ରିୟ ଶିଶୁ ସାହିତ୍ୟିକ ତଥା କବି ନନ୍ଦକିଶୋର ସାମଲଙ୍କ ୨ୟ ବାର୍ଷିକ ଶ୍ରାଦ୍ଧ ଦିବସରେ ଆମେ ସମସ୍ତେ ଏକତ୍ରିତ ହୋଇପାରି ଥିବାରୁ । ଏହା ନିଶ୍ଚିତ ଆମ ପାଇଁ ଗର୍ବ ଓ ଗୌରବର ବିଷୟ । ଆମର ପୂଜ୍ୟ ଗୁରୁ ଆମ ଠାରୁ ଦୀର୍ଘ ୩ ବର୍ଷ ହେଲା ବିଦାୟ ନେଲେଣି । ତାଙ୍କର ପାର୍ଥିବ ଶରୀର ଆମ ନିକଟରେ ନଥିଲେ ମଧ୍ୟ ତାଙ୍କର ମନ, ପ୍ରାଣ ଓ ଆତ୍ମା ଆମ ନିକଟରେ ସର୍ବଦା ବିଦ୍ୟମାନ ହୋଇ ରହିଛି–ସେଥିପାଇଁ ଏ ଉତ୍ସବର ଆୟୋଜନ–କବି ନନ୍ଦକିଶୋର ସ୍ମୃତିନ୍ୟାସର ପରିକଳ୍ପନା ।

ଗତ ବର୍ଷ ଏହି ଉତ୍ସବ ବାଲିଚନ୍ଦ୍ରପୁର ହାଇସ୍କୁଲ ପ୍ରାଙ୍ଗଣରେ ଅନୁଷ୍ଠିତ ହୋଇଥିଲା । ଉକ୍ତ ଉତ୍ସବରେ ବିଶିଷ୍ଟ ସାହିତ୍ୟିକ ଡକ୍ଟର ମହେଶ୍ୱର ମହାନ୍ତି, ଡାଃ ନିତ୍ୟାନନ୍ଦ ସ୍ୱାଇଁ, ପ୍ରତିଷ୍ଠିତ କବି ଶ୍ରୀ ବ୍ରଜନାଥ ରଥ ଯୋଗ ଦେଇ କବିଙ୍କର ଗୁଣଗାନ କରିଥିଲେ । ଗତବର୍ଷ ଏହି ଉତ୍ସବରେ କବି ରାଜକିଶୋର ପାଢ଼ୀ ଓ ଆଦର୍ଶ ଶିକ୍ଷକ ଶ୍ରୀ ପୀତାମ୍ବର ଶରଣଙ୍କୁ କବି ନନ୍ଦକିଶୋର ସାମଲ ସ୍ମୃତି ସମ୍ମାନ–୨୦୦୪ ପ୍ରଦାନ କରାଯାଇଥିଲା । କିନ୍ତୁ, ଦୁଃଖ ଓ ପରିତାପର ବିଷୟ ଯେ ଗତବର୍ଷ ଉତ୍ସବରେ ଯିଏ ସମସ୍ତଙ୍କର ସମ୍ମାନର କେନ୍ଦ୍ରବିନ୍ଦୁ ଥିଲେ, ସେହି କବି ପତ୍ନୀ ଏ ବର୍ଷ ଉତ୍ସବ ବେଳକୁ ଆଉ ନାହାନ୍ତି । ସେଥିପାଇଁ ଆମେ ସମସ୍ତେ ଦୁଃଖିତ । ଏହି ଅବସରରେ ତାଙ୍କ ଅମର ଆତ୍ମାର ସଦ୍‌ଗତି କାମନା କରୁଛୁ ।

ଏ ବର୍ଷର କବି ନନ୍ଦକିଶୋର ସାମଲ ସ୍ମୃତି ସମ୍ମାନ–୨୦୦୫ ପ୍ରଦାନ କରାଯିବା ପାଇଁ ଯେଉଁମାନଙ୍କୁ ମନୋନୀତ କରାଯାଇଛି ସେମାନେ ହେଲେ – ବିଶିଷ୍ଟ କବି ଶ୍ରୀଯୁକ୍ତ ବ୍ରଜନାଥ ରଥ, ସମାଜସେବୀ ତଥା ନାଟ୍ୟ ନିର୍ଦ୍ଦେଶକ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ସାହୁ ଏବଂ ଆଦର୍ଶ ଶିକ୍ଷକ ଶ୍ରୀଯୁକ୍ତ ଶରତଚନ୍ଦ୍ର ତ୍ରିପାଠୀ । ଏହି ଅବସରରେ ମୁଁ ସେହି ପ୍ରତିଷ୍ଠିତ ବ୍ୟକ୍ତି ବିଶେଷଙ୍କୁ ଅଭିନନ୍ଦନ ଜ୍ଞାପନ କରିବା ସହିତ ତାଙ୍କ କୃତି, ସୃଷ୍ଟି ଓ କାର୍ଯ୍ୟର ଅଧିକ ଉନ୍ନତି କାମନା କରୁଅଛି ।

ସବୁ ବର୍ଷ ପରି କବି ନନ୍ଦକିଶୋର ସାମଲ ଜନ୍ମ ଜୟନ୍ତୀ ଆସନ୍ତା ଜୁନ ୧୨ ତାରିଖରେ ପାଳନ କରାଯିବା ପାଇଁ ଆୟୋଜନ କରାଯାଉଅଛି । ଏହି ଉତ୍ସବରେ କବି ନନ୍ଦକିଶୋର ସାମଲଙ୍କ ଅପ୍ରକାଶିତ ରଚନାଗୁଡ଼ିକୁ ନେଇ ନନ୍ଦକିଶୋର ସାମଲ ରଚନାବଳୀ–୧ ପ୍ରକାଶ କରାଯିବା ପାଇଁ ସବୁ ପ୍ରକାର ଉଦ୍ୟମ କରାଯାଉଛି । ଆପଣମାନଙ୍କର ଅକୁଣ୍ଠ ସାହାଯ୍ୟ, ସହଯୋଗ ଓ ଶୁଭେଚ୍ଛା ମିଳିଲେ ଆମେ ନିଶ୍ଚୟ ଏଥିରେ ସଫଳ ହେବୁ ବୋଲି ମୁଁ ଆଶାବାଦୀ ।

କବି ନନ୍ଦକିଶୋର ସାମଲ ଥିଲେ ସମସ୍ତଙ୍କର ଆପଣାର କବି । ତାଙ୍କୁ ଓଡ଼ିଶା ସାହିତ୍ୟ ଏକାଡେମୀ ସମେତ ପ୍ରାୟ ୪୦ରୁ ଉର୍ଦ୍ଧ୍ୱ ସଂସ୍ଥା ସମ୍ବର୍ଦ୍ଧିତ, ପୁରସ୍କୃତ ତଥା ସମ୍ମାନିତ କରି ତାଙ୍କ ପ୍ରତିଭାକୁ ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କରିଛନ୍ତି । ସେଥିପାଇଁ ସ୍ମୃତିନ୍ୟାସ ଗର୍ବ ଅନୁଭବ କରେ । ମାତ୍ର ଦୁଃଖର ବିଷୟ ଯେ ଏ ପର୍ଯ୍ୟନ୍ତ ତାଙ୍କର ଜୀବନୀ କୌଣସି ଅନୁଷ୍ଠାନ ତରଫରୁ ପ୍ରକାଶ ପାଇ ନାହିଁ । ତାଙ୍କ ଜୀବନୀ ପ୍ରକାଶ ପାଇଲେ ଅନେକ ତଥ୍ୟ ଗବେଷକମାନଙ୍କୁ ମିଳି ପାରିବ ବୋଲି ଆମେ ଆଶା ପ୍ରକଟ କରୁଛୁ । ଆଜି ଆମର ସୌଭାଗ୍ୟ ଯେ ଆମ ଗହଣରେ ଓଡ଼ିଶା ସାହିତ୍ୟ ଏକାଡେମୀର ଉପ–ସଭାପତି ଡକ୍ଟର ହୁସେନ ରବି ଗାନ୍ଧୀ ଉପସ୍ଥିତ ଅଛନ୍ତି । ତାଙ୍କ ନିକଟରେ ଆମେ ନିବେଦନ କରୁଛୁ ଯେ ଓଡ଼ିଶା ସାହିତ୍ୟ ଏକାଡେମୀ ତରଫରୁ କବିଙ୍କର ଜୀବନୀ ପ୍ରକାଶ କରାଗଲେ ଆମେ ଅନୁଗୃହୀତ ହେବୁ । ଏହା ଫଳରେ କବିଙ୍କର ପରିଚୟ ଅଧିକ ବ୍ୟାପ୍ତ ଓ ପ୍ରସାରିତ ହୋଇପାରିବ । ଆଶା ଶ୍ରୀଯୁକ୍ତ ଗାନ୍ଧୀ ମହୋଦୟ ଏ ଦିଗରେ ଆଶୁ ପଦକ୍ଷେପ ଗ୍ରହଣ କରି ଆମକୁ ଖୁସି କରାଇବେ ।

ନନ୍ଦ କିଶୋର ସାମଲ ସ୍ମୃତିନ୍ୟାସ ଏକ କ୍ଷୁଦ୍ର ଅନୁଷ୍ଠାନ । ଆପଣମାନଙ୍କୁ ଆତିଥେୟତା ପ୍ରଦାନ କରିବାରେ ଯଦି କିଛି ତ୍ରୁଟି ରହିଥାଏ, ତେବେ ଆପଣମାନେ ଆମକୁ ସହୃଦୟତାର ସହିତ କ୍ଷମା କରିବେ । ଆପଣମାନଙ୍କର ସଦିଚ୍ଛା, ଶୁଭେଚ୍ଛା ଆମମାନଙ୍କୁ କିଛି କାର୍ଯ୍ୟ କରିବା ପାଇଁ ନିଶ୍ଚୟ ପ୍ରେରଣା ଯୋଗାଇବ ।

ଶେଷରେ ମଞ୍ଚାସୀନ ଅତିଥି ଓ ମୋ ସମ୍ମୁଖରେ ଥିବା କବି ନନ୍ଦକିଶୋର ସାମଲ ପ୍ରତିଭାର ପ୍ରଶଂସକ, ସହଯୋଗୀ ବନ୍ଧୁ ଓ ଅନୁଷ୍ଠାନମାନଙ୍କୁ କୃତଜ୍ଞତା ଜଣାଇ ରହୁଛି ।

॥ଇତି॥

ଆପଣମାନଙ୍କର ପ୍ରତିଭାମୁଗ୍ଧ

***ଶ୍ରୀ ସଦାନନ୍ଦ ସାହୁ***

ସାଧାରଣ ସମ୍ପାଦକ

ନନ୍ଦକିଶୋର ସାମଲ ସ୍ମୃତିନ୍ୟାସ

କୁସୁପୁର, କଟକ



# କବି ନନ୍ଦ କିଶୋର ସାମଲ ସ୍ମୃତି ଉତ୍ସବ

## ସ୍ଥାନ : ନନ୍ଦ କିଶୋର ବିଦ୍ୟାମନ୍ଦିର, କୁସୁପୁର

**୧୯ ମେ ୨୦୦୫**

**ସାରସ୍ୱତ ସମାବେଶ**

## କାର୍ଯ୍ୟସୂଚୀ

| | |
|---|---|
| ସକାଳ ୯ଘଣ୍ଟା | କବିଙ୍କ ସ୍ମୃତିପୀଠରେ ଶ୍ରଦ୍ଧାସୁମନ ଅର୍ପଣ |
| ସକାଳ ୧୦ଘଣ୍ଟା | କବିତା ପାଠୋତ୍ସବ ଓ କବି ସମ୍ମିଳନୀ |
| ଅପରାହ୍ନ ୩ଘଣ୍ଟା | ଛାତ୍ରଛାତ୍ରୀଙ୍କ ଦ୍ୱାରା କବିଙ୍କ ରଚିତ କବିତା ଆବୃତ୍ତି |
| ସଂଧ୍ୟା ୫.୩୦ମି | **ନନ୍ଦ କିଶୋର ସାମଲ ସ୍ମୃତି ସମ୍ମାନ ଉତ୍ସବ** |
| ମୁଖ୍ୟ ଅତିଥି | **ଶ୍ରୀ ନଦୀୟା ବିହାରୀ ମହାନ୍ତି,**<br>ବିଶିଷ୍ଟ ଶିଶୁ ସାହିତ୍ୟ ସ୍ରଷ୍ଟା |
| ସମ୍ମାନିତ ଅତିଥି | ପ୍ରଫେସର **ଡଃ. ବୈଷ୍ଣବ ଚରଣ ସାମଲ** |
| ମୁଖ୍ୟ ବକ୍ତା | **ଡଃ. ହୁସେନ ରବିଗାନ୍ଧୀ**<br>ଉପ ସଭାପତି, ଓଡ଼ିଶା ସାହିତ୍ୟ ଏକାଡେମୀ |
| ସଭାପତି | **ଶ୍ରୀ ବଳରାମ ସାହୁ,**<br>କାର୍ଯ୍ୟକାରୀ ସଭାପତି<br>କବି ନନ୍ଦ କିଶୋର ସାମଲ ସ୍ମୃତିନ୍ୟାସ |
| ସ୍ୱାଗତ ସମ୍ଭାଷଣ | ଅଧ୍ୟାପକ **ଡଃ. ବିଜୟାନନ୍ଦ ସିଂହ,**<br>ଉପଦେଷ୍ଟା, କବି ନନ୍ଦକିଶୋର ସାମଲ ସ୍ମୃତିନ୍ୟାସ |
| ଧନ୍ୟବାଦ ଅର୍ପଣ | ଅଧ୍ୟାପକ **ଡଃ. ବସନ୍ତ କିଶୋର ସାହୁ**<br>ସମ୍ପାଦକ (ପ୍ରକାଶନ କମିଟି)<br>କବି ନନ୍ଦକିଶୋର ସାମଲ ସ୍ମୃତିନ୍ୟାସ |

# ସୂଚୀପତ୍ର



# କବି ନନ୍ଦ କିଶୋର ସାମଲ
# ଏକ ଆଂଶିକ ଅଧ୍ୟୟନ

**ରାଜ କିଶୋର ପାଢ଼ୀ**

ବେଳେବେଳେ ଗୋଟିଏ କବିତା କିମ୍ବା ଗୋଟିଏ କାହାଣୀ ଜଣେ ଜଣେ ସ୍ରଷ୍ଟାକୁ ପାଠକ ପାଖରେ ଚିର ସ୍ମରଣୀୟ କରିଦିଏ। ଅଜସ୍ର ଲେଖାକୁ ପଛରେ ପକେଇ ସେଇ ଲେଖାଟି ତାକୁ ଅମର କରିବାରେ ସମର୍ଥ ହୁଏ। ଅନ୍ୟ ଲେଖା ସବୁ ସଫଳ ହେଲେ ବି ପାଠକ ମନରେ ସମାନ ପ୍ରଭାବ ପକେଇ ପାରନ୍ତି ନାହିଁ। ସେମିତି ଉଦାହରଣ ହେଲା ଗୋଦାବରୀଶଙ୍କ 'କାଳିଜାଇ', ମାନସିଂହଙ୍କ 'ମହାନଦୀରେ ଜ୍ୟୋସ୍ନା ବିହାର' କିମ୍ବା ଗୋଦାବରୀଶ ମହାପାତ୍ରଙ୍କ 'ଉଠ କଙ୍କାଳ' ପ୍ରଭୃତି। ସେଭଳି ସୃଷ୍ଟିରେ ଥିବା ବିଶେଷ ପ୍ରକାର ଆବେଦନ ତାକୁ ଅନନ୍ୟ କରିଦିଏ।

ସେଇମିତି ପ୍ରାଥମିକ ବିଦ୍ୟାଳୟରେ ପଢ଼ା ହେଉଥିବା କବିତାଟିଏ 'ଆମ ଘର', ସେଠି ମାଆ, 'କାଇ ରଗଡେ ଶାଗ ଖରଡେ', 'ପରଜାପତି ତରକାଅତି'ର ଦୃଶ୍ୟଟିଏ ଭାସିଯାଏ। ଅନେକ ଦିନ ତଳେ ଯେତେବେଳେ ପ୍ରଥମେ କବିତାଟି ଦୃଷ୍ଟିକୁ ଆସେ ଏକ ମୁଗ୍ଧ ଅନୁଭବରେ ଉପଭୋଗ କରେ ସେଇଟିକୁ, ସେଠୁ ଖୋଜେ ସ୍ରଷ୍ଟାଙ୍କୁ। ବହିରେ ମିଳନ୍ତି ନାହିଁ। ଯେଉଁମାନେ ପିଲାଙ୍କ ଲାଗି ଲେଖୁଛନ୍ତି ସେଇମାନଙ୍କୁ ମନେ ମନେ ଖୋଜେ ଓ ଠିକ୍ ଧରି ହୋଇଯାଏ ଇଏ କାହାର ଲେଖନୀ ପ୍ରସୂତ। ପରେ ମୋର ଅନୁମାନ ଓ ସିଦ୍ଧାନ୍ତ ଠିକ୍ ବୋଲି ଜାଣେ। ଶୈଳୀ ଠାରୁ ସ୍ରଷ୍ଟା ପୃଥକ୍ ହେବେ କେମିତି! ତେଣୁ ଲେଖକଙ୍କ ନାଆଁ ନଜାଣି ମଧ୍ୟ ଲେଖାରୁ ତାଙ୍କୁ ଜାଣି ହୁଏ।

ସେଇ ଗ୍ରାମୀଣ ପରିବେଶ ଓ ଜୀବନ ବୋଧର ନିଖୁଣ ଓ ନିପୁଣ ଆଲେଖ୍ୟ। କାହା ଲେଖନୀର କୁହୁକ ସ୍ପର୍ଶ ଥିବ ସେଥିରେ! ସେଇ ପଲ୍ଲୀ ପ୍ରାଣତା କେଉଁଠୁ ମିଳିବ! ହୁଏତ ଖୋଜିଖୋଜି ପଲ୍ଲୀକବି ନନ୍ଦ କିଶୋରଙ୍କ ଗାଆଁ କୁସୁପୁର ଯାଏ ଯିବାକୁ ହେବ। ସମାନ ଆତ୍ମୀୟତାର ଆଉ ଜଣେ ସ୍ରଷ୍ଟା ମିଳିଯିବେ ସେଇ ବିରୂପା କୂଳରେ। ଏକା ନାମ, ଖାଲି ସାଙ୍ଗିଆ, ସାମଲ। କେଉଁ ପତ୍ର ପତ୍ରିକାରେ କବିତାଟିଏ କି ତାଙ୍କର ବହିଟିଏ ହେଉ, ପଢ଼ି ବସିଲେ ନନ୍ଦ କିଶୋର ସାମଲଙ୍କ ସ୍ୱାତନ୍ତ୍ର୍ୟ ବାରି ହୋଇ ପଡ଼େ। ସରଳ ଓ ସ୍ୱାଭାବିକ ଢଙ୍ଗରେ କବିତାର କୁହୁକ ଓ କୁହୁତାନ ସେ ସୃଷ୍ଟି କରିପାରନ୍ତି, କିଛି ଆଡମ୍ବର, ଶବ୍ଦ କସରତ୍, ଉପକ୍ରମ, ଆଭରଣ କି ଅଳଙ୍କରଣ ନାହିଁ। ତଥାପି ସୁନ୍ଦର ସିଧା ଓ ସହଜ। ଯେମିତି ମଫସଲୀ ଝିଅଟିଏ କି ଲାଜକୁଳୀ ଲତାଟିଏ। କେଉଁ ରାଜୋଦ୍ୟାନର ସଯତ୍ନ ପାଳିତ ଗୋଲାପ ନୁହେଁ। ପ୍ରାକୃତିକ ସୌନ୍ଦର୍ଯ୍ୟ ପରି ଅବଧାରିତ ଓ ଆଲୁଳାୟିତ।

ହେଇ ଯିମିତି, 'ମୁଁ କହିବି କଥାଟିଏ', ଭିତରେ ପଥର ଥିଲି ମୁଁ ଗୋଡ଼ି ପାଲଟିଲି, ଆଜି ମୁଁ ପାଲଟି ଯାଇଛି ବାଲି କବିତାଂଶ ପ୍ରକୃତିର ଅବଲୀଳାକୁ ସିଧା ଓ ସରଳ ଭାବରେ ଉପସ୍ଥାପନ କରୁଛି ଓ ପ୍ରକୃତି ପର୍ଯ୍ୟବେକ୍ଷଣରୁ ଈଶ୍ୱରଙ୍କ ପର୍ଯ୍ୟନ୍ତ ବାଟ ଫିଟି ଯାଇଛି। ସେଇ ବହିର 'ଆମେ କିଆଁ ତାକୁ ଛୁଇଁବା ନାହିଁ ମା, କଣ ହୋଇଚି ତାର' ? ଭଳି ପ୍ରଶ୍ନ ଭିତରେ କବି ଆମ ସମାଜ ଜୀବନର ଚିତ୍ରଟିଏ ଶିଶୁଟି ମୁହଁରେ ଅବୁଝା ପ୍ରଶ୍ନ ପଚାରି ଆଙ୍କି ଦିଅନ୍ତି। ଏପରିକି କବିତାର ନାମ କରଣରେ ବିଶେଷତ୍ୱ ଦେଖାଯାଏ। 'ଫୁଲଟିଏ ଫୁଟିଥିଲି ମୁହିଁ', 'ଜଣେ ଥିଲେ ରଜା', 'ଗୁଣ୍ଡୁଚି ମୂଷା ପିଠିରେ ଗାର', 'ବାଡିରେ ସଜନା ପିଡାରେ ପୋଇ' ନବଜାତ ଶିଶୁଟି ପାଇଁ ପିତାମାତାଙ୍କର ସ୍ୱତଃସ୍ଫୁର୍ତ୍ତ ଉଚ୍ଚାରିତ ନାଆଁଟିଏ ପରି ଲାଗେ। ଭାବିଚିନ୍ତି ନାଆଁରେ କିଛି ଚମତ୍କାରିତା କି ବିଶିଷ୍ଟତା ଆଣିବାର ଟିକିଏ ହେଲେ ପ୍ରଯତ୍ନ ନାହିଁ।

ତାଙ୍କର ପଦଟିଏ କବିତା 'ଟଙ୍କା ସୁନାଧନ ଏଇଠି ରହିବ ସାଙ୍ଗରେ ଯିବେନି କେହି, ଧରମ କରମ ଯେତେ ଭଲକାମ ପାଖେ ପାଖେ ଥିବ ରହି' ପଢିଲେ ପଲ୍ଲୀ କବି ନନ୍ଦ କିଶୋରଙ୍କ କବିତାର କିଛି ଉଦାସ ରାଗିଣୀ ଓ ଯଶୋବଂତ ଦାସଙ୍କ ଗୋବିନ୍ଦ ଚନ୍ଦ୍ର ଆଖ୍ୟାନ ମନେ ପଡିଯାଏ। ଗ୍ରାମ ଜୀବନରେ ସୁଖ ଦୁଃଖ, ଛୋଟ ଛୋଟ ମାମୁଲି ଜିନିଷର ମହତ୍ୱ ଉପସ୍ଥାପନ ତାଙ୍କ କବିତାର ଏକ ବଡ଼ ବିଭବ ଭାବରେ ଗ୍ରହଣ କରାଯାଇପାରେ। ନଈ ବଢି କି ବରଷା କାଳରେ ଗାଆଁରେ ଭାରି ଅସୁବିଧା ହୁଏ। ଘମ, ଘଷିଚାଳି ଓ ଶୁଖିଲା ପତର ଗାଆଁର ସାଧାରଣ ମଣିଷଙ୍କର ଉପକାର ଓ ପ୍ରୟୋଜନରେ ଆସେ। ତାକୁ ନେଇ କବିତା ଲେଖି ଗାଉଁଲୀ ଜୀବନର ପରିଚୟକୁ ଶିଶୁ ପାଖରେ କବି ନିବିଡ କରିଦିଅନ୍ତି।

'ମୁଁ କହିବି କଥାଟିଏ, ତୁ କହିବୁ ହୁଁ', ବହିଟି ଭିତରେ କେଉଁଠି ହେଲେ ଶବ୍ଦର କଠିନତା କି ଆଟୋପ ନାହିଁ। ଘଷି ମାଜି କିଛି ଚକ୍ ଚକ୍ କରାଯାଇନି। ନିରାଡମ୍ବର କଥନ ଭଙ୍ଗୀଟିଏ ସବୁଠି ଛଳ ଛଳ ହେଉଛି। ବହିର ନାଆଁକୁ ନେଇ ରଚିତ କବିତାଟିରେ ଏକାକ୍ଷରୀ ଶବ୍ଦ ହୁଁ କୁଁ ପୁଁ ପୁଁ ଇତ୍ୟାଦିରେ ପଦ ପକେଇ ଶିଶୁର ପରିଚିତ ଶବ୍ଦ ଭଣ୍ଡାରରେ ପ୍ରୟୋଗରେ ସାଙ୍ଗୀତିକତା ସୃଷ୍ଟି କରାଯାଇ ପାରିଛି।

କବି ନନ୍ଦ କିଶୋରଙ୍କ ଅନ୍ୟ ଏକ ପୁସ୍ତକ, 'ମତେ ଯେତେବେଳେ ଦଶ ବରଷ'। ମୋଟ ତେରଟି କବିତାକୁ ନେଇ ବହିଟି ସୃଷ୍ଟି। ଦଶ ବରଷର ପାଠ ପଢୁଆ ପିଲାଟିଏ। ସେ ପୁଣି ବିଲରେ, ଘରେ ରୋଷେଇ ଶାଳରେ, ଗୁହାଳେ, ଫୁଲ ବଗିଚାରେ, ପଡ଼ିଶା ଘରେ, ନଈ ଘାଟରେ, ତୋଟାରେ, ସଡକରେ, ଖେଳ ପଡିଆରେ ଗାଧୁଆ ତୁଠରେ, ନଈକୂଳେ ଓ ହାଟ ବଜାରରେ ଉପସ୍ଥିତ। ସବୁଠି ସେ ତାର କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟ ବିଷୟରେ ସଚେତନ। କାମରେ ତାର ଆଗ୍ରହ। ସେ ଶ୍ରମ ବିମୁଖ ନୁହେଁ। କାମ କରିବାକୁ ଭଲ ଲାଗେ। 'ପାଠ ବେଳେ ପାଠ ପଢେ ମୁଁ ଘରେ, ଦରକାର ବେଳେ ଖଟେ ବିଲରେ।' ଘରେ ସେ ମାଆଙ୍କୁ କାମରେ ସାହାଯ୍ୟ କରେ। ବଗିଚାରେ କାମ କରେ। ପଡିଶା ଘରେ ସାହାଯ୍ୟ ଓ ସେବା

କରେ। ଗୁହାଳେ ଗୋସେବା କରେ। ସବୁଠି ଭବିଷ୍ୟତରେ ଭଲ ମଣିଷ ହେବାର ଆଗ୍ରହଟିଏ ଛପି ରହିଥାଏ। ଯିମିତି 'ଗାଧୁଆ ତୁଠରେ ଗାଧୁଆ ତୁଠରେ ଜାଗା ଅଳପ ବିଳମ୍ବ କରିବା ନାହିଁ, ଚଞ୍ଚଳ ସାରିବା ଗାଧୁଆ କାମ ଅନ୍ୟକୁ ସୁବିଧା ଦେଇ' କିମ୍ବା ହାଟ ବଜାରରେ। 'ସଉଦା କିଣିବା ପଇସା ଦେଇ ବାକି ମାଗି ମାନ ହାରିବା ନାହିଁ।

ଜଣେ ଦଶ ବରଷର ଶିଶୁ ତା ଅନୁଭୂତି ଓ ଆଗ୍ରହକୁ ଗାଆଁରେ ତେରଟି ସ୍ଥାନରେ ପ୍ରକାଶ କରିଚାଲିଛି। ସବୁଠି ସୁବିଧା ଅସୁବିଧା ଅଛି। ତାରି ଭିତରେ ମିଳିମିଶି ଚଳିବାକୁ ସେ ଆପଣେଇ ନେଇଛି ଓ ଭଲ ମଣିଷଟିଏ ହବାକୁ ଚାହିଁଛି। ତା ପାଇଁ ସବୁଠି ଯେପରି କିଛି ସୁଯୋଗ ଅଛି। ସେଇ ଦଶ ବରଷର ଶିଶୁଟି ପରି ଦୁଃଖ, ଅଭାବ ଓ ସାଧାରଣ ପରିବେଶ ଭିତରେ ବଢୁଥିବା ଅସଂଖ୍ୟ ଶିଶୁ ଲାଗି ବହିଟି ଆମ୍ କାହାଣୀ କଥନ ପରି ଉପଭୋଗ୍ୟ ଓ ପ୍ରେରଣା ଦାୟକ ହୋଇଛି।

ଯେତେ ଦୁଃଖ ଥିଲେ ବି ସବୁ ସାହିତ୍ୟର ଅସଲ ଉଦ୍ଦେଶ୍ୟ ହେଲା ଆନନ୍ଦ। ଶିଶୁମାନଙ୍କ ପାଇଁ ସାହିତ୍ୟର କଥା ଉଠିଲେ ସେଇ ଆନନ୍ଦ ହସ ଖୁସି ଓ ମଜା ମଉଜର କଥା ଉଠିବା ସ୍ୱାଭାବିକ। ପିଲାଙ୍କ ମୁହଁରେ ହସ ଫୁଟେଇବା ଆମର ଲକ୍ଷ୍ୟ। ସେଇମାନଙ୍କ ହସରେ ଧରାବି ହସି ଉଠିବ। ସେଇଥି ପାଇଁ କବିଙ୍କର ବହିଟି, 'ହସି ହସେଇବା ଧରା।' ଆଠଟି କବିତାର ସମାବେଶ ଏ ବହିରେ। ନୂଆ ଆଶା, ସ୍ୱପ୍ନ, ଓ ନୂଆ ଯୁଗ ପାଇଁ କଳ୍ପନାର ନକସାଟିଏ ପ୍ରଥମେ କବି ଆଙ୍କନ୍ତି ପିଲାଙ୍କ ମନରେ। ବଡ଼ ହବାର ସମ୍ଭାବନାମୟ ଦିନଗୁଡିକ ଯେତେ ଉଜ୍ଜ୍ୱଳ ହେଉ ପଛକେ ସେଇ ଗାଆଁର ପଲ୍ଲୀ କବିଙ୍କ ପରି କବିଙ୍କର ଗାଆଁ ପ୍ରତି ମମତା ଓ ଆକର୍ଷଣ ଅତି ନିବିଡ। ଖୁବ୍ ନିବିଷ୍ଟ ଭାବରେ ସେ ଭଲ ପାଆନ୍ତି ଗାଆଁର ଆଲୁଅ, ପବନ, ଟିକି ଗଡ଼ିଆ, କଳମ ନଟି, ନୀଳ ପାହାଡ, ଝୁମୁକି ଝାଟି, ବିଲ, ତୋଟା, କିଆ ଗୋହିରୀ, ଜୁକୁଜୁଳା, ବଉଳ, ବିଲୁଆ ଡାକ ଓ ବିରୂପା ନଈ, ଗାଆଁର ଏଇ ପରିବେଶ କବି ପ୍ରାଣକୁ ଆଚ୍ଛନ୍ନ କରିରଖିଛି। କେବଳ ଗୋଟିଏ ଦୁଇଟି କବିତାରେ ନୁହେଁ ଅନେକ କବିତାରେ ଆମେ ଲକ୍ଷ୍ୟ କରୁ ଏଇ ସହଜାତ ମାନସିକତାଟିକୁ। ସେ ଯେପରି ବାରମ୍ବାର ଟାଣି ହେଇ ଫେରିଯାଏ ସେଇ ପ୍ରିୟ ପଲ୍ଲୀର ପଲ୍ଲବମୟ ଛାୟା ଶୀତଳ କୋଳକୁ।

"ଭାରି ଭଲ ଲାଗେ ମତେ ମୋ ଗାଆଁ ଆଲୁଅ ପବନ ତାର
ଯେଉଁଠି ରହିଲେ ଯୁଆଡେ ଗଲେ ମନେପଡିଯାଏ ମୋର।"

ଏପରି କବିତା ଭିତରେ ଏକ ଚିରନ୍ତନ ଶିଶୁ ମନ ଦେଖି ହୁଏ। ସେଇଥି ପାଇଁ ସେ ଘଟଣା ବିହୀନ, ନିରୁଦ୍‌ବିଗ୍ନ, ଚିରାଚରିତ ଗାଆଁରେ ସବୁ ଆମ ପାଇଁ ନୂଆ ଦେଖନ୍ତି ଓ କୌତୁକ ବି ଅନୁଭବ କରନ୍ତି। ସେଇଥି ପାଇଁ ଏଣ୍ଟୁରି ଅନ୍ୟ ପିଠାକୁ ପଚାରି ପାରେ 'ବୁଢାଟି ମାନତ ହେଲଣି, ହଳଦୀ ପତର ଲୁଗା ପିନ୍ଧିଛକି ହେଜି ହେଜି କେହି କହନି?' ସେଇପରି ରାଧୁ ମଳିକ ପରି ସାଧାସିଧା ପରୋପକାରୀ ଗାଉଁଲୀ ମଣିଷ ପିଲାଙ୍କ ପାଇଁ

ଆଦର୍ଶ ହୋଇଉଠେ।

ଗୋଟିଏ ପରେ ଗୋଟିଏ ବହି ସେଇ ଲେଖନୀରୁ ବାହାରେ ଆସେ ପିଲାଙ୍କ ପାଇଁ। ପୁରୁଣା ଗାଆଁକୁ ନେଇ ଓ ତାର ଜନଜୀବନକୁ ନେଇ। ସବୁ ଲେଖାରେ ସହଜ ସାଧାସିଧା ଭାଷା ନିଜ ବିଭବରେ ମଣ୍ଡିତ। କୌଣସି କୃତ୍ରିମତା ନଥାଇ ମାମୁଲି ଚିତ୍ରଣ ଗାଆଁର ମାଟି ଘରେ ଝୋଟିପରି ଉକୁଟି ଉଠେ। ଯିମିତି 'ସିଏ ମୁଁ ତମେ' ପୁସ୍ତକର ଏଇ ଅଂଶଟି – 'ଚାଷୀ, ସବୁବେଳେ ଥାଏ ଖୁସି, ସକାଳୁ ଉଠି ପଖାଳ ଖାଏ ହେଉ ପଛକେ ବାସି। ଚାଷୀ, ଗୋଡରେ ତେଲ ଘଷି, ସେକ ଦିଏ ତା ପାଦ ଦୋଟି ଚୂଲୀ ମୁଣ୍ଡରେ ବସି।'

କିନ୍ତୁ ଏଣେ ଗାଆଁ ବଦଳୁଛି, ଏ କଥା କବି ଜାଣୁଛନ୍ତି, ଗଛ ଲତା ତୋଟା ଉଜୁଡୁଛି। ସତୁରି ବରଷ ତଳେ ଗାଆଁରେ ଯେଉଁ ଦୃଶ୍ୟ ସେ ଦେଖିଥିଲେ ସେ ଅବସ୍ଥା ନାହିଁ। କୋଳି, ଝଙ୍କା ବର, ଗାଆଁକୁ ବାଘ ଆସିବା, ବର ମୂଳେ ପାଣିଦବା, ଘିଅ ଦୁଧ ପ୍ରଚୁର ମିଳିବା କି ସ୍ନେହ ଶ୍ରଦ୍ଧାର ଡୋରରେ ସମସ୍ତେ ବନ୍ଧା ହବାର ଅବସ୍ଥା ନାହିଁ। ପକ୍ଷୀଟିଏ ଶରବିଦ୍ଧ ହେଲେ ପିଲାଙ୍କୁ ପଶୁପକ୍ଷୀଙ୍କୁ ଶ୍ରଦ୍ଧା କରିବାକୁ, ତାଙ୍କ ଦୁଃଖରେ ଦୁଃଖୀ ହବାକୁ କବିତାରେ କ୍ଷେତ୍ର ପ୍ରସ୍ତୁତ ହୋଇଛି। ସ୍ନେହଶ୍ରଦ୍ଧା, ସହାନୁଭୂତି ଓ ମମତା ବୋଧ ଯେ ମୌଳିକ ପିଲାଙ୍କ ମନରେ ପଲ୍ଲବିତ ହୋଇପାରିବ। ସେଇଥି ପାଇଁ ସିଏ ମୁଁ ତମେ ଏକାଠି ରହିବାର ଆହ୍ୱାନ ତାଙ୍କ କବିତାର ଶେଷ କଥା ହୋଇଛି।

ଏଇ ଆହ୍ୱାନ ଭିତରେ ନଈ ପାହାଡ ଗଛଲତା ପଶୁପକ୍ଷୀ, ସ୍ନେହ ଶ୍ରଦ୍ଧା, ପରୋପକାର ଛଳନା ବିହୀନ ସ୍ୱାଭାବିକ ଜୀବନର ନୈସର୍ଗିକ ଚିତ୍ର ଆଂକିବାରେ କବି ସଦା ତତ୍ପର। ଜଣେ ଶିକ୍ଷକ ଓ ପଲ୍ଲୀ କବିଙ୍କ ଉତ୍ତର ସୂରୀ ଭାବରେ କବି ନନ୍ଦ କିଶୋର ସାମଲ ପଲ୍ଲୀ ପ୍ରକୃତି ଜୀବନ ଓ ଶିଶୁ ପ୍ରାଣତାକୁ ଆଧାର କରି ବିରୂପା କୂଳରେ କବିତାର ମୋହନ ମୂରଲୀ ମଧୁର ସ୍ୱରରେ ବଜାଇ ଚାଲିଥିଲେ। ସେଇ ସ୍ୱର ଅଗଣିତ ଶିଶୁ ଚିତ୍ତକୁ ଅଧିକରୁ ଅଧିକ ଜୟ କରି ଚାଲିଥିଲା ଅନେକ ବର୍ଷଧରି। ଦୁଇ ବର୍ଷ ହେବ ତାହା ସ୍ଥିର ହୋଇ ଯାଇଛି। ଆଜି କବି ନାହାନ୍ତି କିନ୍ତୁ ତାଙ୍କ ଲେଖା ତାଙ୍କର ଜୟଗାନ କରୁଛି। ❑❑❑

କୋଟପୁର, ଯାଜପୁର-୭୫୫୦୦୮



# ଶ୍ରଦ୍ଧାଂଜଳି

ଶ୍ରୀ କ୍ଷୀରୋଦ ଚନ୍ଦ୍ର ପୋଥାଳ

ନନ୍ଦ କିଶୋର ବାବୁ ସାହିତ୍ୟ ସାଧନା କ୍ଷେତ୍ରରେ ମୋର ଅଗ୍ରଜ ପ୍ରତିମ ହେଲେବି ଆମ ଦୁହିଁଙ୍କ ମଧ୍ୟରେ ବଂଧୁତା ଥିଲା ଅତି ଘନିଷ୍ଠ, ନିହାତି ନିବିଡ଼।

ମାହାଙ୍ଗା ଅନ୍ତର୍ଗତ କୁସୁପୁରସ୍ଥ ନନ୍ଦକିଶୋର ବିଦ୍ୟା ମନ୍ଦିରର ସେ ଥିଲେ ଶିକ୍ଷକ। ବୃତ୍ତିରେ ଶିକ୍ଷକ, ପ୍ରବୃତ୍ତିରେ ସାହିତ୍ୟିକ।

ଅତୀତଟା ସୁଦୀର୍ଘ ହୋଇଗଲେ ବି ସବୁ କଥା କାଲି ପରି ମନେ ପଡୁଛି। ୧୯୬୫ ମସିହାରୁ ୧୯୭୮ ଯାଏ ମୁଁ ଦୈନିକ ମାତୃଭୂମି କାର୍ଯ୍ୟାଳୟରେ ଯୋଗ ଦେଇ ସେଇଠାରେ ଅବସ୍ଥାନ କରୁଥାଏ। ନନ୍ଦକିଶୋର ବାବୁଙ୍କ ସହିତ ପ୍ରଥମ ଦେଖା ସେଇଠାରେ। ପରିଚୟ ହେଲା ପରେ ସ୍କୁଲ କାମରେ ହେଉ କି ବ୍ୟକ୍ତିଗତ କାମରେ ହେଉ ସେ କଟକ ଗଲେ ନିଶ୍ଚୟ ମୋ ପାଖକୁ ଆସନ୍ତି। ଘଣ୍ଟା ଘଣ୍ଟା ଧରି ଆଳାପ ଆଲୋଚନାରେ ଆମେ ଏମିତି ମସ୍‌ଗୁଲ ହୋଇଯାଉ ଯେ ଆମ ଉଭୟଙ୍କର ସମୟ ଜ୍ଞାନ ରହେ ନାହିଁ।

ବିଭିନ୍ନ ପତ୍ରିକାରୁ ତାଙ୍କ ଲେଖାଗୁଡିକ ପଢି ମୁଁ ଯେତିକି ବିମୁଗ୍ଧ ହୋଇଥାଏ, ସେ ମଧ୍ୟ ମୋ ଲେଖା ଗୁଡିକ ପଢି ସେତିକି ବିମୁଗ୍ଧ ହୋଇଥାନ୍ତି। ଆମ କଥୋପକଥନରୁ ଏଇଟା ବାରିହୋଇପଡେ।

କିନ୍ତୁ ନନ୍ଦ କିଶୋର ବାବୁଙ୍କ ମୁହଁରୁ କେବେ ଆତ୍ମ ପ୍ରଶସ୍ତି ମୁଁ ଶୁଣିଥିଲା ପରି ମୋର ମନେ ପଡୁ ନାହିଁ। ବରଂ ନିଜ ସୃଷ୍ଟି ଉପରେ ତାଙ୍କର ବିଶ୍ୱାସ ଓ ଭରସା ନଥିଲା ପରି ଜଣାପଡେ। କାରଣ ସେ ପଚାରି ଦିଅନ୍ତି 'ସତରେ କଣ କ୍ଷୀରୋଦ ବାବୁ, ମୋର ସେ କବିତାଟା ଆପଣଙ୍କୁ ଭଲ ଲାଗିଛି ?'

ଗୋଟିଏ ମଜା କଥା ମନେ ପଡୁଛି। ସେତେବେଳକୁ ତାଙ୍କ ରଚିତ ଆମଘର କବିତାଟି ୨ୟ ଶ୍ରେଣୀର ପାଠ୍ୟପୁସ୍ତକରେ ସ୍ଥାନୀତ ହୋଇ ସର୍ବତ୍ର ଉଚ୍ଚ ପ୍ରଶଂସିତ ହୋଇ ସାରିଥାଏ। ଦିନେ ନନ୍ଦ କିଶୋର ବାବୁ କହିଲେ – "କ୍ଷୀରୋଦ ବାବୁ ଆମଘର କବିତାକୁ କଣ ସମସ୍ତେ ପ୍ରଶଂସା କରୁଛନ୍ତି ? ଆଉ କେହି କେହି ସେଇଟା ମୋର ସର୍ବଶ୍ରେଷ୍ଠ କୃତି ବୋଲି କହୁଛନ୍ତି ! ଆପଣଙ୍କୁ ସେ କବିତାଟି କେମିତି ଲାଗେ ?"

ତାଙ୍କ କଥା ଶୁଣି, ମୁଁ ମନେ ମନେ ହସିଲି। ଭାବିଲି ଏତେ ପ୍ରଶଂସା ଶୁଣିଲା ପରେ ବି ନିଜ ସୃଷ୍ଟି ପ୍ରତି ଇଏ ଏବେ ବି ସନ୍ଦିହାନ। ଏଥିରୁ ଜଣାଯାଏ, ନିଜ ସୃଷ୍ଟି ଉପରେ ୟାଙ୍କର ଭରସା ନାହିଁ !!

ତାଙ୍କ ପ୍ରଶ୍ନର ଉତ୍ତର ଦବାକୁ ଯାଇ କହିଲି – "କବିତାଟି ମତେ ବହୁତ ଭଲ

ଲାଗେ। କିନ୍ତୁ ଏଇଟି ଆପଣଙ୍କର ସର୍ବଶ୍ରେଷ୍ଠ କୃତି ନୁହେଁ।'' ସିଏ ସ୍ତବ୍ଧ ଚକିତ ନୟନରେ ମତେ ଅନେଇ ରହି, କହିଲେ ''ଆପଣ କଣ ଆଜି ଗୋଟାଏ ନୂଆ କଥା କହୁଛନ୍ତି ?''

ମୁଁ କହିଲି– କ୍ଷୀରୋଦ ପୋଥାଳ ସବୁବେଳେ ନୂଆ କଥା କହେ। କିଏ କଣ କହିଲେ ବୋଲି ମୁଁ କଣ ସେଇଆ କହିବି ? ମୁଁ ମୋ କଥା କହିବି।

ନନ୍ଦ କିଶୋର ବାବୁ ଆହୁରି ଆଶ୍ଚର୍ଯ୍ୟ ହୋଇଯାଇ ପଚାରିଲେ ତା ହେଲେ କେଉଁ ଲେଖାଟି ମାର ସର୍ବଶ୍ରେଷ୍ଠ କୃତି ବୋଲି ଆପଣ କହିବାକୁ ଚାହାନ୍ତି ?

ମୁଁ କହିଲି 'ନନ୍ଦ କିଶୋର ସାମଲଙ୍କ ସର୍ବଶ୍ରେଷ୍ଠ କୃତି ଏ ପର୍ଯ୍ୟନ୍ତ ତାଙ୍କ ଲେଖନୀରୁ ବାହାରି ନାହିଁ।' ମୋ ପାଟିରୁ କଥା ନ ସରୁଣୁ ସିଏ ହସି ହସି ମତେ କୁଣ୍ଢେଇ ପକେଇଲେ। କହିଲେ – 'ଯା ହେଉ, ଆଜି ଆପଣଙ୍କ ଠାରୁ ମୂଲ୍ୟବାନ କଥା ପଦେ ଶୁଣିଲି।'

ତା ପରେ ମୁଁ କହିଲି – ଯେଉଁ ଦିନ ନଦୀ ସାଗରରେ ମିଶିଯିବ, ସେଇଦିନ ତାର ସ୍ରୋତ ମନ୍ଥର ହୋଇଯିବ। ତେଣୁ ଜଣେ ସ୍ରଷ୍ଟାକୁ ତାର ସର୍ବ ଶ୍ରେଷ୍ଠ କୃତିକୁ ଚିହ୍ନେଇ ଦେଲେ, ସେ ଆଉ ସାଧନାରେ ଅଗ୍ରସର ନ ହୋଇ ଘାଣ୍ଟୁ ପାଲଟି ଯିବାର ସମ୍ଭାବନା ଯଥେଷ୍ଟ। ସୃଷ୍ଟି କରିଯିବା ଆମର କାମ। କିଏ ସର୍ବଶ୍ରେଷ୍ଠ କୃତି ତାହାର ବିଚାର ଆଲୋଚନା କରିବା କିମ୍ବା ସେ ଆଡକୁ କାନ ଦେବା ଆମ ପକ୍ଷେ ଉଚିତ ନୁହେଁ। ଆମ କୃତିତ୍ୱର ବିଚାର କରିବ ମହାକାଳ। ତାର ଚାଲୁଣୀରେ ଚଲେଇ ଦେଇ ଅସଲ ଜିନିଷଟିକୁ ସାଇତି ରଖିଦେବ। ଆଉ ସେଇ ହେବ କାଳଜୟୀ ଓ ଆମର ସର୍ବଶ୍ରେଷ୍ଠ କୃତି। ନିନ୍ଦା, ପ୍ରଶଂସା ଆଡକୁ କାନ ନ ଡେରି ଲେଖିଯିବା ଆମର କାମ। ତେବେ ସାଧନା ପଥରେ ପ୍ରୋତ୍ସାହନ କିମ୍ବା ପ୍ରଶଂସା ଯେ ଅନାବଶ୍ୟକ, ସେ କଥା ମୁଁ କହୁ ନାହିଁ। ସେ ସବୁ ଅବଶ୍ୟ ସ୍ୱାଗତଯୋଗ୍ୟ। କିନ୍ତୁ ପ୍ରୋତ୍ସାହନ ଓ ପ୍ରଶଂସାକୁ କେବଳ ପାଥେୟ କରି ସାଧନା ପଥରେ ଆଗେଇ ଯିବା ଆମର କର୍ତ୍ତବ୍ୟ। ଅନ୍ୟଥା ସେ ବିଷୟରେ ଏତେଟା ମୁଣ୍ଡ ଖେଳେଇବା ଦରକାର ନାହିଁ।

ଏହିପରି ବନ୍ଧୁ ଆଳାପ ଆଲୋଚନା ଭିତରେ ଆମର ଘଣ୍ଟା ଘଣ୍ଟା ସମୟ ଅତିବାହିତ ହୋଇଛି। ସେ ସବୁ ସ୍ମୃତି ହୋଇ ରହିଯାଇଛି ମୋର ମାନସ ପଟରେ।

ବଂଧୁ ନନ୍ଦକିଶୋର ବାବୁ ଇହଜଗତରୁ ବିଦାୟ ନେବାର ୨ବର୍ଷ ପୁରିବାକୁ ଯାଉଛି। ହେଲେ ଏବେ ବି ତାଙ୍କର ଚେହେରା ମୋ ଆଖିରେ ନାଚୁଛି, ତାଙ୍କର ସେଇ ଭାବ ଗମ୍ଭୀର ସ୍ୱର ମୋ କାନ ପାଖରେ ପ୍ରତିଧ୍ୱନିତ ହେଉଛି। ସମସ୍ତେ ତ ଦିନେ ଯିବା। କିଏ ଆଗେ, କିଏ ବା ପଛେ। କିନ୍ତୁ ନନ୍ଦ କିଶୋର ବାବୁଙ୍କ ପରି ସରଳ, ଅମାୟିକ, ମେଳାପି ମିଷ୍ଟଭାଷି ମଣିଷଟିଏ, ମୋ ଜୀବନରେ ଆଉ ମିଳିବେ ନାହିଁ।

ମୋର ସେଇ ସତୀର୍ଥ ବଂଧୁ ନନ୍ଦ କିଶୋର ବାବୁଙ୍କ ପବିତ୍ର ଶ୍ରାଦ୍ଧ ବାର୍ଷିକୀରେ ତାଙ୍କର ଦିବଂଗତ ଅମର ଆତ୍ମା ପ୍ରତି ହାର୍ଦ୍ଦିକ ଶ୍ରଦ୍ଧାଂଜଳି ଅର୍ପଣ କରୁଛି। ❑❑❑

କଳ୍ପବଟ, ଗୋପପୁର, ନିଶ୍ଚିନ୍ତ କୋଇଲି, କଟକ – ୭୫୪୨୦୭,



# ଶିଶୁ ପ୍ରାଣର କବି ନନ୍ଦକିଶୋର

ଦୟାନିଧି ବେହେରା

କୁସୁପୁର ମାଟି କରିଲ ଧନ୍ୟ ନନ୍ଦ କିଶୋର
ସାହିତ୍ୟ ହୋଇଛି ବଳିଷ୍ଠ ପାଇ ତବ ସ୍ୱାକ୍ଷର ।
ଶିଶୁ ପ୍ରାଣ ଶିଶୁ କଲ୍ୟାଣ ପାଇଁ ତମରି କଥା
ବୁଝୁଥିଲ ତମେ ସତରେ ଶିଶୁ ପ୍ରାଣର ବ୍ୟଥା ।
ଆମ ଘର କଥା ଲେଖିଲ କିଏ ପାରିବ ଭୁଲି
ପଢିଲେ ଲାଗଇ ଲେଖିଛି ଜଣେ ନିଜର ବୋଲି ।
ଉଡ଼ି ଉଡ଼ି ଆସି ପରଜାପତି ଫୁଲରେ ଝୁଲେ ।
ପଢା ଘରେ ବସି ପିଲାଟି ପଢା ବହି ଯେ ଖୋଲେ ।
ମାଆ ହାତ ଗଢା ପିଠାର ସମ ଅଛି କି ତୁଲ ?
ଶିଶୁର ମନରେ ଘରର ମାୟା ଜଗାଇ ଦେଲ ।
'ଗୁଣ୍ଡୁଚି ମୂଷାର ପିଠିରେ ଗାର' ସାଙ୍ଗସାଥୀଙ୍କୁ ଡାକି ।
'ସରଗଫୁଲ'କୁ ସାଉଁଟି କେତେ ଯତନେ ଭରି
କହିଲ, 'ଆମେ ଏ ମାଟିର ସୁନାଫରୁଆ' ବୋଲି।
'ମୋ ଗାଆଁ ମୋ ଦେଶ' ଯେ ଜାତି କଥାକୁ କହେ
'ଦେଶ ପାଇଁ ଯିଏ ଶହୀଦ ହେଲେ' ଅମର ରହେ ।
ମର୍ତ୍ତ୍ୟ ମଣ୍ଡଳେ ଦେହ ବହି କହେଟି ଭାଗବତ
'ଅଜା ପଚାରିଲେ ଆଈକି ' ପର ପଦ କୁହତ ।
'ମୁଁ କହିବି କଥାଟିଏ ତୁ କହିବୁ ହୁଁ' ସଦା
'ସିଏ ମୁଁ ତୁମେ' ସଭିଏଁ ଏକ ସୂତ୍ରରେ ବନ୍ଧା ।
'କଣା ମାଠିଆ'ର ପରିତ ଆମେ ଜୀବନ ଭାଇ
ଘଡିକେ ଅଛନ୍ତି ଏଇଠି ଆଉ ଘଡିକେ ନାହିଁ।
ସରଳ ଜୀବନ ଯାପନ ଥିଲା ଜୀବନ ବ୍ରତ
'ବର୍ଷା ନିଳୟମ୍' ଥିଲା ଯେ ତମ ସାଧନା ପୀଠ।
ବର୍ଷା ନିଳୟମ ଝୁରୁଛି ତମ ସାନ୍ନିଧ ପାଇଁ
ସ୍ମୃତି ଅର୍ଘ୍ୟ ଦେଇ ରହିଛୁ ତମ ବାଟକୁ ଚାହିଁ।
ସରଗରେ ଥାଇ ମହାତ୍ମା କୋଟି ପ୍ରଣାମ ଘେନ
ଆଶୀର୍ବାଦ ଦେଇ ସଭିଙ୍କୁ ବାରେ କର କଲ୍ୟାଣ । ❑❑❑

କଣ୍ଟାବାଞ୍ଜି ଉପଡାକଘର,କଣ୍ଟାବାଞ୍ଜି, ବଲାଙ୍ଗୀର

# ନନ୍ଦ କିଶୋର ଶିଶୁ-ଜିଜ୍ଞାସା

**ଡଃ ଇନ୍ଦୁପ୍ରଭା ସାମଲ**

କଟକ ଜିଲ୍ଲାର ମାହାଙ୍ଗା ଥାନା ଅନ୍ତର୍ଗତ କୁସୁପୁର ମାଟିରେ ବହୁ ସାହିତ୍ୟ ସାଧକଙ୍କ ମଧ୍ୟରେ ସାହିତ୍ୟିକ ନନ୍ଦ କିଶୋର ସାମଲ ଅନ୍ୟତମ। ତାଙ୍କର ନିଷ୍ଠାପର ସାହିତ୍ୟ–ସାଧନା, ସାହିତ୍ୟ ଜଗତରେ ତାଙ୍କୁ ଯଶସ୍ୱୀ କରିପାରିଛି। ସାହିତ୍ୟର ଅନ୍ୟାନ୍ୟ ବିଭାଗରେ ଲେଖନୀ ଚାଳନା କରିଥିଲେ ହେଁ ଶିଶୁ ସାହିତ୍ୟ କ୍ଷେତ୍ରରେ ତାଙ୍କର କୃତିତ୍ୱ ଯଥେଷ୍ଟ ଉର୍ଦ୍ଧ୍ୱରେ।

ଶିଶୁ ସାହିତ୍ୟ କ୍ଷେତ୍ରରେ ନନ୍ଦ କିଶୋର ଶିଶୁ ଜିଜ୍ଞାସା ହେଉଛି ଅନୁସନ୍ଧାନ ମନୋବୃତ୍ତି ବିକାଶ, ଜୀବନ ଓ ପରିବେଶ ପ୍ରତି ଶୃଙ୍ଖଳାଗତ ବିଚାରର ନିଦର୍ଶନ। ଆମେ ଯେ ଭଳି ସାହିତ୍ୟର ବହୁ ବିଭାଗ, ଯେମିତିକି ଗଳ୍ପ, ଉପନ୍ୟାସ, କବିତା, ନାଟକ, ଏକାଙ୍କିକା, ଭ୍ରମଣ କାହାଣୀ ପ୍ରଭୃତିରୁ ରସ ଆହରଣ କରୁ, ସେହିପରି ଶିଶୁ ସାହିତ୍ୟର ଉଦ୍ଦେଶ୍ୟ ମଧ୍ୟ ଏକ। ପୂର୍ବରୁ ରଚିତ ହେଉଥିବା ଶିଶୁ ସାହିତ୍ୟରେ ଆନନ୍ଦ ପ୍ରଦାନ ଅପେକ୍ଷା ଉପଦେଶ ତଥା ନୈତିକ ଶିକ୍ଷାର ଗୁରୁତ୍ୱ ବେଶି ରହୁଥିଲା। ପ୍ରାଚୀନ ସାହିତ୍ୟ ସମ୍ଭାର 'ପଞ୍ଚତନ୍ତ୍ର', 'ହିତୋପଦେଶ', 'ଜାତକ କଥା', 'କଥା ସରିତ ସାଗର' ପ୍ରଭୃତି ଏହାର ପ୍ରକୃଷ୍ଟ ଉଦାହରଣ। ସମୟ କ୍ରମେ ଶିଶୁ ସାହିତ୍ୟରେ ଜିଜ୍ଞାସାର ବିବର୍ତ୍ତନ ଘଟି ଚାଲିଛି। ଶିଶୁ ସାହିତ୍ୟ ପ୍ରଥମ ଅବସ୍ଥାରେ ଲୋକ ସାହିତ୍ୟ ସହ ମିଶି ରହିଥିଲା। ଏହାର ପ୍ରମାଣ ମିଳେ ଆମର ବହୁ ଲୋକଗୀତ ଓ ଲୋକ କାହାଣୀରୁ। ଯାହାକି ଲିଖିତ ସାହତ୍ୟ ଠାରୁ ଭିନ୍ନ ଥିଲା। ଅର୍ଥାତ୍ ମୌଖିକ ସାହିତ୍ୟ ପ୍ରଭାବରେ ଶିଶୁ ସମାଜ ବିକଶିତ ହୋଇ ପାରିଥିଲା। ଧୀରେ ଧୀରେ ମୁଦ୍ରଣ ଶିଳ୍ପର ପ୍ରବର୍ତ୍ତନ ହେଲା ଏବଂ ସାହିତ୍ୟର ଅନ୍ୟାନ୍ୟ ବିଭାଗ ପରି ଶିଶୁ ସାହିତ୍ୟ ମଧ୍ୟ ବିକାଶ ଲାଭ କଲା। ଲୋକ ସାହିତ୍ୟକୁ ଅବଲମ୍ବନ କରି ପ୍ରଥମେ ଶିଶୁ ସାହିତ୍ୟ ସୃଷ୍ଟି ହେଲା। ଏହାପରେ ସମୟର ବିବର୍ତ୍ତନ ସହ ଆଧୁନିକ ଓ ଅତ୍ୟାଧୁନିକ ମାନସିକତା ଭିତ୍ତିରେ ଶିଶୁ ସାହିତ୍ୟ ରଚନା କେତେକାଂଶରେ ଆନ୍ତର୍ଜାତିକ ଓ ଭ୍ରମଣାତ୍ମକ ହୋଇଯାଇଛି। ସେଥି ମଧ୍ୟରୁ କାଳ ବିଚାର ବିଶେଷରେ ଅନେକ ଉତ୍କୃଷ୍ଟ ଶିଶୁ ରଚନା ନିର୍ଦ୍ଦିଷ୍ଟ ଦେଶ ଓ କାଳର ସୀମା ଭିତରେ ନ ରହି ସାର୍ବଜନୀନ ଓ ସାର୍ବକାଳୀନ ହୋଇଥିବାର ଦେଖାଯାଇଛି। ଏହି ସାର୍ବଜନୀନ ଓ ସାର୍ବକାଳୀନର କଥା ଓଡିଆ ଶିଶୁ ସାହିତ୍ୟ କ୍ଷେତ୍ରରେ ବିଚାର କରାଯିବା ବେଳେ ଯେଉଁ କେତେକ ସମ୍ମାନାସ୍ପଦ ଶିଶୁ ସାହିତ୍ୟିକଙ୍କ ନାମକୁ ଶ୍ରଦ୍ଧାର ସହ ଉଚ୍ଚାରଣ କରିବାକୁ ପଡେ ସେମାନଙ୍କ ମଧ୍ୟରେ ଶିଶୁ–ସାହିତ୍ୟିକ ନନ୍ଦ କିଶୋର ସାମଲ ଅନ୍ୟତମ।

ଗାଁ ମାଟିର ବାସ୍ନା ଓ ଗାଁ ମାଟିର ପରଂପରାରେ ଜୀବନବୋଧର ସୁନ୍ଦର ସମନ୍ୱୟ ହିଁ ନନ୍ଦ କିଶୋର ଶିଶୁ ଜିଜ୍ଞାସାର ପ୍ରକୃତ ଅନ୍ତରାତ୍ମା। ଆଉ ଗୋଟେ ଗୁରୁତ୍ୱପୂର୍ଣ୍ଣ

କଥା ହେଲା – ଶିଶୁ ସାହିତ୍ୟ ରଚନା ଭିତରେ ଶିଶୁମାନେ ସାହିତ୍ୟ ପଢ଼ିବା ସହ କିଛି ଜ୍ଞାନ ଆହରଣ କରି ସାହିତ୍ୟ ସୃଷ୍ଟି କରିବାର ସର୍ଜନାତ୍ମକ କଳାକୁ ସେ ଶିଖାଇବାର ପ୍ରଚେଷ୍ଟା କରିଥିଲେ। କାରଣ ଶିଶୁମାନଙ୍କ ଦ୍ୱାରା ସାହିତ୍ୟ ସୃଷ୍ଟିର କିଛି ତାତ୍ପର୍ଯ୍ୟ ଅଛି ବୋଲି ସେ ସର୍ବଦା ଭାବୁଥିଲେ। ପ୍ରକୃତରେ ଦେଖିବାକୁ ଗଲେ ଶୈଶବ ଅବସ୍ଥାରେ ବିଭିନ୍ନ ପ୍ରକାରର ସର୍ଜନଶୀଳତା ପ୍ରକାଶ ପାଇଥାଏ। ଯେମିତିକି ଶିଶୁମାନଙ୍କର ନାନା ପ୍ରକାର ଖେଳ କସରତ, ସ୍କୁଲ ତଥା ନିଜ ଘରର ପରିସର ମଧ୍ୟରେ ବିଭିନ୍ନ ପ୍ରକାର କାର୍ଯ୍ୟକଳାପରେ ନାନା ଭାବରେ ପରିପ୍ରକାଶ ହୋଇଥାଏ। ଶିଶୁ ତାର ବିଭିନ୍ନ ସାଙ୍ଗସାଥୀମାନଙ୍କ ସହ ନିଜେ ଚିନ୍ତା କରି ବିଭିନ୍ନ ପ୍ରକାର ଗପ କହିବା, ନିର୍ଜିବ ବସ୍ତୁରେ ଜୀବନ ସଂଚାର କରି କଳ୍ପନା ରାଜ୍ୟରେ ମଗ୍ନ ରହିବା ଏବଂ ସେଥିରେ ସର୍ବପ୍ରାଣବାଦ ଆରୋପ କରି ଅନୁକରଣ ପ୍ରିୟ ହେବା ଭିତରେ ଶିଶୁ ମନୋରାଜ୍ୟରେ ସୃଜନଶୀଳତାର ପରିପ୍ରକାଶ ହୁଏ। ଆଉ ଏହାରି ଭିତରେ ହିଁ ଶିଶୁଟିଏ ପାଇଁ ପରୋକ୍ଷରେ ସାହିତ୍ୟ ସୃଷ୍ଟିର ସମ୍ଭାବନା ଲୁଚି ରହିଥାଏ।

ଏହି ସବୁ ଆଭିମୁଖ୍ୟ ଶିଶୁ ସାହିତ୍ୟିକ ନନ୍ଦ କିଶୋର ସାମଲଙ୍କ ରଚନାରେ ସ୍ପଷ୍ଟ ଭାବେ ଉପଲବ୍ଧ। ଯାହାକି ତାଙ୍କ ସର୍ଜନାତ୍ମକ କଳାର ସଫଳତାକୁ ପାଠକମାନଙ୍କ ପାଖରେ ପରଖିବାରେ ସାହାଯ୍ୟ କରେ। ଏହି ସଫଳତାର ନିଦର୍ଶନ ତାଙ୍କ ସୃଷ୍ଟିର ପ୍ରଜ୍ଞା ଦୀପ୍ତତା, ନୈତିକ ଶିକ୍ଷା ଅର୍ଜନ ଏବଂ ବହୁ ଅଭିଜ୍ଞତା ଅନୁଭୂତି ଉପରେ ନିର୍ଭରଶୀଳ। ତଥାପି ଏତେ ସବୁ ଜ୍ଞାନର ଅଧିକାରୀ ହୋଇବି ସେ କେବେ ପୁରସ୍କାର ପଛରେ ଗୋଡାଇବାକୁ ଶ୍ରେୟ ମଣି ନାହାନ୍ତି। ନିଜର ଶୈକ୍ଷିକ ଆଦର୍ଶ ଓ ସ୍ୱାଭିମାନକୁ ସେ ସବୁବେଳେ ନିଜର ଭୂଷଣ ବୋଲି ମନେ କରିଛନ୍ତି। ଶିଶୁ-ସାହିତ୍ୟର ଏକ ସ୍ପଷ୍ଟ ଧାରଣାକୁ ସେ ସବୁ ସ୍ତରର ମାନସିକତା ପାଖରେ ବ୍ୟାପ୍ତ କରାଇପାରିଛନ୍ତି କାରଣ ତାଙ୍କର କିଛି ରଚନା ସ୍କୁଲ ପାଠ୍ୟ ପୁସ୍ତକରେ ଅନ୍ତର୍ଭୁକ୍ତ କରାଯାଇଛି। ତାଙ୍କର ଶିଶୁ ସାହିତ୍ୟ କୃତି ଆବଶ୍ୟକ ଜ୍ଞାନ ବିତରଣ ସହ ସକାରତ୍ମକ ଦୃଷ୍ଟିଭଂଗୀ ପ୍ରଦାନ କରିଥାଏ। ଏକଦା ଏକ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ନନ୍ଦ ସାର କହିଥିଲେ – ''ଶିଶୁ ହୃଦୟ ସାଧାରଣତଃ କୌତୁକ ଓ ଅନ୍ୱେଷାମୟ।'' ତେଣୁ ଶିଶୁମାନଙ୍କ ଲାଗି ଲିଖିତ ଗଳ୍ପ, ଉପନ୍ୟାସ, କବିତା ଓ ନାଟକ ଆଦି ବିଭିନ୍ନ ରଚନାରେ ସଂପୂର୍ଣ୍ଣ ଭାବେ ଅନୁକୂଳ କ୍ଷେତ୍ର ପ୍ରସ୍ତୁତ କରିବା ଉଚିତ। ପ୍ରକୃତ ଅର୍ଥରେ ସେ ନିଜ ରଚନା କ୍ଷେତ୍ରରେ ଏହି ଆଭିମୁଖ୍ୟକୁ ହିଁ ଗ୍ରହଣ କରିପାରିଛନ୍ତି। ଶିଶୁ ସାହିତ୍ୟ ରଚନା କ୍ଷେତ୍ରରେ ମୁଖ୍ୟତଃ ଦୁଇଟି ନିର୍ଦ୍ଦିଷ୍ଟ ରସର ସଞ୍ଚାର କରାଯାଇପାରେ। ମନୋବିଜ୍ଞାନୀମାନେ ମଧ୍ୟ ଏ କଥାକୁ ସାବ୍ୟସ୍ତ କରିପାରିଛନ୍ତି ଯେ ଭୟ ଓ କ୍ରୋଧ ଦୁଇଟି ମୁଖ୍ୟ ଭାବାବେଗ ଶିଶୁ ଠାରେ ଦେଖାଯାଏ। ଏହାଛଡା ହାସ୍ୟ, ଶୋକ, ବିସ୍ମୟ ଆଦି ଭାବାବେଗ ମଧ୍ୟ ସେମାନଙ୍କୁ ଆଚ୍ଛନ୍ନ କରି ରଖିଥାଏ ସେମାନଙ୍କ ନିତିଦିନିଆ ଚଳଣିରେ। ତେଣୁ ଏହି ସମସ୍ତ ଭାବାବେଗକୁ ନେଇ ଶିଶୁସାହିତ୍ୟ ପର୍ଯ୍ୟାୟ କ୍ରମେ ପରିପୃଷ୍ଟ ହୋଇପାରିଛି। ନନ୍ଦ କିଶୋର ସାମଲଙ୍କ ଶିଶୁ ସାହିତ୍ୟରେ ଶିଶୁମାନସିକତା ସମ୍ଭାବନାମୟ ଭାବାବେଗକୁ ସବୁ ସମୟରେ ଧରି ରଖିଛି।

ଏଇ କିଛି ବର୍ଷ ଧରି ଶିଶୁ ସାହିତ୍ୟରେ ମନୋବିଜ୍ଞାନ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଗୁରୁତ୍ୱ ବୃଦ୍ଧି ପାଇଛି ଅନେକ ଶିଶୁ ସାହିତ୍ୟିକଙ୍କ କଲମରେ । ଏହା ଫଳରେ ପୂର୍ବ ଧାରାରେ ରହିଥିବା ଶିକ୍ଷାଦାନ ଓ ଉପଦେଶାତ୍ମକ ଭାବନାର ଗୁରୁତ୍ୱ ଅନେକାଂଶରେ କମିଛି କିନ୍ତୁ ନନ୍ଦକିଶୋର ସାମଲଙ୍କ ପରି ଶିଶୁ ସାହିତ୍ୟିକ ସାର୍ବଜନୀନ ସାର୍ବକାଳୀନ ଶିଶୁ ସାହିତ୍ୟ ସୃଷ୍ଟି କରି ନିଜସ୍ୱ ପରିଚୟରେ ସଦା ଅମର ହୋଇ ରହିଥିବେ । ❑❑❑

ଅଧ୍ୟାପିକା, ଧର୍ମଶାଳା ମହିଳା ମହାବିଦ୍ୟାଳୟ,
ଜାରକା, ଯାଜପୁର



## ବଉଳ ଫୁଲର ବାସରେ ବାସରେ...

ବିଶ୍ୱେଶ୍ୱର ମହାନ୍ତି

ରାତିର ଶିଶିର ବିନ୍ଦୁ ହୋଇ ତୁମେ
ଫୁଟାଇଛ କେତେ କବିତା ଫୁଲ
ଆଜିର ଦୁନିଆ ବଜାରରେ ପରା
ଦେଇ ପାରିବେନି କେହି ତା ମୂଲ ।।

ଦିଗହରା କେତେ ଛୋଟ ବୋଇତରେ
ଦିଶା ଦେଖାଇଛ ବାନ୍ଧିଛ ପାଲ
ସାରା ମୁଲକରେ ନାଆଁ କରିଛନ୍ତି
ଧରି ତୁମ ଦାନ ଜ୍ଞାନ ମଶାଲ ।।

ଗାଆଁକୁ କରିଛ ଅତି ଆପଣାର
ସହରକୁ ନାକ ଟେକିଛ ପରୀ
ଛାତ୍ରଙ୍କ ଉନ୍ନତି ପାଇଁ ଭୁଲିଅଛ
ନିଜ ଜୀବନର ସୁଖ ଓ ଶିରୀ ।।

'ବିରୂପା' ବେରୂପା ହୋଇ ରହିଗଲା
କେହି ଶୁଣୁ ନାହିଁ (ତାର) ବେଦନା ସୁର
ମାହାଙ୍ଗା ମାଟିର ସବୁ ଦିଗନ୍ତ ରୁ
ଏବେ ବି ଶୁଭୁଛି ତୁମରି ସ୍ୱର ।।

ହାତ ଗଢା ତୁମ କେତେ ଚାଟ ପିଲା
ଗାଉଛନ୍ତି ବସି ତୁମ କୀରତି
ବଉଳ ଫୁଲର ବାସରେ ବାସରେ
ତୁମେ ହୋଇଗଲ ଅଲିଭା ଜ୍ୟୋତି ।।

❑❑❑

ସାହାପୁର, କୁମୁଡାଜୟପୁର,
ମାହାଙ୍ଗା, କଟକ - ୭୫୪୨୮୭

# ମୋର ଗୁରୁଦେବ

ଶରତ୍ ଚନ୍ଦ୍ର କର

କବି, ନାଟ୍ୟକାର, ଶିଶୁ ସାହିତ୍ୟିକ ଦିବଂଗତ ନନ୍ଦ କିଶୋର ସାମଲ ମୋର ପୂଜାସ୍ପଦ ଗୁରୁ। ଆଜିକୁ ତେୟାଳିଶି ବର୍ଷର ଅତୀତକୁ ଅନେଇବାର ସୁବିଧା ସୁଯୋଗ ନାହିଁ। ମନେ ହୁଏ ସବୁ ନିରର୍ଥକ ଓ ନିରାଧାର। ସଂପୂର୍ଣ୍ଣ ପଲ୍ଲୀ ପରିବେଶରେ ନିମ୍ନ ମଧ୍ୟବିତ୍ତର ଅଭାବ ଅନଟନ, ଭିତରୁ ଉତୁରି ଆସି ପରିସ୍ଥିତି ଓ ପରିବେଶରେ ସବୁ ପ୍ରତିକୂଳତାକୁ ଅତିକ୍ରମି ଯେଉଁ କିଶୋରଟି ୧୯୬୨ ମସିହାରେ ନନ୍ଦ କିଶୋର ବିଦ୍ୟା ମନ୍ଦିର କୁସୁପୁରୁର ମଣିଷ ଗଢା କାରଖାନା ଭିତରକୁ ପଶି ଆସିଲା, ସେ ହୁଏତ ତାର ଭାଗ୍ୟ-ଭବିଷ୍ୟତ ବିଷୟରେ ନିହାତି ଅଜ୍ଞ ଥିଲା। ଆଜି ଭାବିଲେ କେମିତି ଲାଗୁଛି। ପଲ୍ଲୀ ସରସୀ ଛାତିରେ ଫୁଟନ୍ତ ଶତଦଳକୁ ଶୁଭ୍ର-ସତେଜତା ଓ ରକ୍ତାଭ ଅନୁରାଗ ଦେଲା କିଏ? ଭାବନାରିକ୍ତ ମନରେ ଭାବବୋଧ ଓ ମନନ କେମିତି ଭରିଗଲା? କେଉଁ ମାନ୍ତ୍ରିକର ଓଁକାରରେ ଉପଳ ଖଣ୍ଡରେ ଶାଳଗ୍ରାମ ଶିଳାର ମହିମା ଭରିଗଲା। ଏହା କେବେ ହେଲେ ବି ଏକ ଅଦ୍ଭୁତ ଘଟଣା ନ ଥିଲା। ଏହାର ପୃଷ୍ଠଭୂମିରେ ବହୁ ଅଦୃଶ୍ୟ ହାତର କରାମତି, ସଦିଚ୍ଛା ଓ ଶୁଭେଚ୍ଛା, ଶ୍ରଦ୍ଧା ଓ ଶ୍ରମ ରହିଛି, ଯାହା ଆଦୌ ବିନିମୟ ସାପେକ୍ଷ ନୁହେଁ। ଅନ୍ୟ କଥାରେ ଏହା ପ୍ରାପ୍ତି-ପ୍ରତିଦାନ ପରଙ୍ମୁଖ ଗୁରୁର ଅକୃପଣ କୃପାଞ୍ଜଳି। ଯେଉଁମାନଙ୍କର ଆଶିଷ-ରେଣୁରେ ଏହି ଅକିଞ୍ଚନର ଜୀବନ-ପାତ୍ର ପୂର୍ଣ୍ଣ ହୋଇଛି, ସେମାନଙ୍କ ମଧ୍ୟରେ ମୋର ପ୍ରିୟ ଗୁରୁ ନନ୍ଦ କିଶୋର ସାମଲ ଅନ୍ୟତମ।

ଗୁରୁ ପରମେଶ୍ୱରଙ୍କ ପ୍ରତିନିଧି। ଶିଷ୍ୟର ଅଭିଳାଷ ପୂରଣକାରୀ, ସତ୍ୟର ପଥପ୍ରଦର୍ଶକ, ଅଜ୍ଞାନ-ତିମିର-ବିଧ୍ୱଂସୀ ଦିବ୍ୟ ଜ୍ୟୋତିର ସ୍ୱରୂପ। ଗୁରୁ କଳ୍ପତରୁ। ସେ ଦିନର ନନ୍ଦ କିଶୋର ବିଦ୍ୟାମନ୍ଦିର ଏକ ପଲ୍ଲୀ ଆଶ୍ରମର ଭ୍ରାନ୍ତି ସୃଜୁଥିଲା ମନରେ। ଆମ୍ବ, ନଡିଆ, ଗୁଆ, ଅଶୋକ, ଜାମୁ, ପିଜୁଳି ଆଦି ନାନା ମହାବୃକ୍ଷର ସମାରୋହରେ ଶାନ୍ତିପୂର୍ଣ୍ଣ ପଲ୍ଲୀଗ୍ରାମର ମାଧୁରିମୟ ଶାନ୍ତ କୋଳରେ ମୋର ଏହି ଜ୍ଞାନ ମନ୍ଦିରଟି ଦିଗହରା ପଥଚାରୀ ପାଇଁ ଥିଲା ବତୀଘରଟିଏ। ଉଷାରାଣୀ ଗଭାରେ ଖଞ୍ଜିତ ପ୍ରଭାତି ତାରା ପରି, ପ୍ରକୃତି ଶୀର୍ଷରେ ଖଚିତ ବହୁବର୍ଣ୍ଣୀ ପୁଷ୍ପଗୁଚ୍ଛ ପରି ଏହାର ଶୋଭା।

ଘରଠାରୁ ଆଠମାଇଲ ଦୂର ଥିଲା ମୋର ବିଦ୍ୟାଳୟ। ଆଖପାଖରେ ଉଚ୍ଚ ବିଦ୍ୟାଳୟ ନଥିଲା। ଥିଲେ ବି କୁସୁପୁର ହାଇସ୍କୁଲର ବିକଳ୍ପ ନଥିଲା। ମୁଁ ନଳୀପୁର ସ୍କୁଲରୁ ୫ମ ଶ୍ରେଣୀ ପାଶ୍ କରି ପଢିଲି କୁସୁପୁର ନନ୍ଦ କିଶୋର ବିଦ୍ୟାମନ୍ଦିରରେ। ମୋର ସାର୍‌ମାନଙ୍କ ମଧ୍ୟରେ ଥିଲେ ସ୍ୱର୍ଗୀୟ ଉମାନାଥ ଶତପଥୀ, ସ୍ୱର୍ଗୀୟ ବାଞ୍ଛାନିଧି ପଣ୍ଡା, ସ୍ୱର୍ଗୀୟ ଗୌରାଙ୍ଗ

ଚରଣ ଧଳ, ସ୍ୱର୍ଗୀୟ ନାରାୟଣ ମହାନ୍ତି, ଶ୍ରୀଯୁକ୍ତ ବଟ କିଶୋର ନାୟକ, ଶ୍ରୀଯୁକ୍ତ ଚୈତନ୍ୟ ଚରଣ ବଳ, ପଣ୍ଡିତ ରସାନନ୍ଦ ଶତପଥୀ, ଶ୍ରୀଯୁକ୍ତ ଗୋବିନ୍ଦ ଚନ୍ଦ୍ର ମହାପାତ୍ର, ଶ୍ରୀଯୁକ୍ତ ରୁଷିବର କୁଣ୍ଡୁ, ଶ୍ରୀଯୁକ୍ତ ବ୍ରଜ କିଶୋର ଶତପଥୀ, ଶ୍ରୀଯୁକ୍ତ ପ୍ରହଲ୍ଲାଦ ସାହୁ ଓ ଶ୍ରୀଯୁକ୍ତ ରୂପାକର ଷଡଙ୍ଗୀ। ପ୍ରଧାନ ଶିକ୍ଷକ ଥିଲେ ଯଥାକ୍ରମେ ଶ୍ରୀଯୁକ୍ତ ଧନେଶ୍ୱର ସାମଲ ଓ ଶ୍ରୀଯୁକ୍ତ ମୁରଲୀଧର ଆଚାର୍ଯ୍ୟ। ନନ୍ଦ ସାର୍ ତାଙ୍କ ମଧ୍ୟରୁ ଜଣେ ଥିଲେ।

ମୁଁ ସାହିତ୍ୟ ଅନୁରାଗୀ ଓ ସାହିତ୍ୟ ପ୍ରତି ଅନୁରାଗ ହେତୁ ମୋର ସାହିତ୍ୟ ଶିକ୍ଷକମାନଙ୍କ ସହିତ ତାଳମେଳ ଭଲ ଥିଲା। ପ୍ରଥମେ ବାଞ୍ଛାନିଧି ବାବୁ, କିଛି ଦିନ ଘନଶ୍ୟାମ ବାବୁ କେବେ କେବେ ପ୍ରଧାନ ଶିକ୍ଷକ ମୁରଲୀବାବୁ  ନବମରୁ ଏକାଦଶ ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଭାବରେ ସାହିତ୍ୟ ପଢାଉଥିଲେ ନାରାୟଣ ସାର୍। ମୋର 'ବି' ସେକ୍ସନ୍ ହୋଇଥିବାରୁ ମୁଁ ସିଧାସଳଖ ନନ୍ଦ ସାର୍‌ଙ୍କ ଠାରୁ ସାହତ୍ୟ ପଢିନାହିଁ।

ତେବେ ସାର୍‌ଙ୍କ ସହିତ ମୋର ସଂପର୍କ କାକତାଳୀୟ ନଥିଲା। ନନ୍ଦ ସାର୍ ଥିଲେ ଆମ ସ୍କୁଲର ଗୋଟିଏ ସାଂସ୍କୃତିକ ଅନୁଷ୍ଠାନ। ଗୀତ ରଚୁଥିଲେ, ସ୍ୱର ଦେଉଥିଲେ, ଗୀତିନାଟିକା ଲେଖୁଥିଲେ ଓ ଏହାର ମଞ୍ଚାୟନ ଦାୟିତ୍ୱ ନେଉଥିଲେ। ମୁଁ ପିଲାଟି ଦିନରୁ ବଡ ଚପଳ। ତାଳ-ଲୟ-ହୀନ ଗାୟକ, ଅକୁଶଳୀ ଅଭିନେତା। ଏସବୁ ସତ୍ତ୍ୱେ ମୋର ରସ ଗ୍ରାହିତାରେ ଦ୍ୱନ୍ଦ୍ୱ କିମ୍ବା ଦ୍ୱିଧା ନଥିଲା। ଭରପୂର ମନରେ ନାଟକ/ଯାତ୍ରା ଦେଖେ। ଅନୁକରଣ ପ୍ରିୟତା ହେତୁ ତା'ର ଭାବାନୁଷଙ୍ଗ ଯଥାଯଥ ଭାବରେ ଗ୍ରହଣ କରିପାରେ। ନନ୍ଦସାର୍ ମୋ ଭିତରେ ଥିବା ସହୃଦୟଟିକୁ ଚିହ୍ନି ପାରିଥିଲେ।

ସେଦିନ ସରସ୍ୱତୀ ପୂଜା ସରିବା ପରେ ବାର୍ଷିକ ଉତ୍ସବ ଅନୁଷ୍ଠିତ ହେଲା। ନନ୍ଦ ସାର୍ ଲେଖିଥିଲେ 'ସାଧବ ଝିଅ' ଗୀତି ନାଟ୍ୟ। ତାର ମଞ୍ଚାୟନ ଯୋଜନା ଚାଲିଥାଏ। ନିର୍ଦ୍ଦେଶନା ଦେଉଥିଲେ ଶ୍ରୀ କୃଷ୍ଣ ଚନ୍ଦ୍ର ସାହୁ (କୃଷ୍ଣ ଭାଇ)। ନିହାତି ବଦ୍‌ରାଗୀ ଚିଡିଚିଡା ମଣିଷଟିଏ। ନନ୍ଦ ସାର୍ ତାଙ୍କୁ  ଭାବାର୍ଥ ଓ ମଞ୍ଚାୟନ କୌଶଳ ବୁଝାଇଥିଲେ।

ମନେ ପଡୁଛି ସେଦିନର ସେହି ବାସନ୍ତୀ ସନ୍ଧ୍ୟାର କଥା। ଗାୟକ ଭିକାରୀ ବଳଙ୍କ କଣ୍ଠରୁ ଭାସି ଆସିଲା 'କାଇଁଚ ପତର ସରୁ /ପଣସ ପତର ସରୁ' ଗୀତର ଲହରୀ। ସଭା ସ୍ତବ୍ଧ ହୋଇଗଲା ବଳଙ୍କ କଣ୍ଠରେ। ତାପରେ ଅଭିନୀତ ହେଲା 'ସାଧବ ଝିଅ' ଗୀତିନାଟ୍ୟ। ଝାପ୍‌ସା ମନେ ପଡୁଛି ଆରମ୍ଭଟି ଥିଲା ଠିକ୍ ଏହିପରି –

''ସାଧବପୁଅର ବୋଇତ ଫେରିଛିରେ<br>ପାଲଟାଣି ଜମ୍ବୁ ଦ୍ୱୀପୁ<br>ପଛରେ ରହିଲା ଦୂର ପରବତ<br>ନୀଳ ଦରିଆର ଟାପୁ।''

ଗୀତବାଦ୍ୟର ତାଳେ ତାଳେ ଅଭିନୟ ରଚିଲେ କୁଶୀଲବ ଶ୍ରେଣୀ। ସବୁଠୁ ମନଛୁଆଁ ଥିଲା ସାତ ଭାଉଜଙ୍କର ତଅପୋଇକୁ ଦୋଳିରେ ଝୁଲାଇ ଗାଉଥିବା ଗୀତ କେଇପଦ।

"କଦଳୀ କାଟିଲି ଚେକି
କାନକୁ ଆଣିବେ ଢୋଲା ଚଉକି
ସାଜି ଦେବି ରାଜ ଦୁଲାଳୀକି ॥
ଦୂର ପରବତ ଛାଇ
ଅଳପ ଦିନରେ ଫେରିବ ଭାଇ
କେତେ ପରଦେଶୀ ଚିଜ ନେଇ ॥"

ପଲ୍ଲୀ ପରିବେଶରେ ଦୋଳି ଗୀତର ଏ ମଧୁର, ମନୋହର ମୂର୍ଚ୍ଛନା ଆଜି ହୁଏତ ଅନୁରଣିତ ହେଉନାହିଁ । ତେବେ କିଶୋର ମନର ଅନୁଭବହୀନତା ଭିତରେ କେଉଁଠି ଜାଗୁଥିଲା ଏକ ଅହେତୁକ କୌତୂହଳ ।

ନନ୍ଦ ସାର୍‌ଙ୍କ ପ୍ରଥମ ପ୍ରକାଶିତ ବହିଟି ଥିଲା 'ଗୁଣ୍ଡୁଚି ମୂଷାର ପିଠିରେ ଗାର' । ଏ ବହିଟି ସାର୍‌ଙ୍କ ଆଦେଶ କ୍ରମେ ସମସ୍ତେ କିଣିଥିଲୁ । ଏହାର ଛତ୍ରେ ଛତ୍ରେ ଭରି ରହିଥିଲା ଶିଶୁ-ହୃଦୟ-ସଂବାଦୀ ଭାବନା । ସରଳ, ସାବଲୀଳ ଓ ସହଜ ଭାଷାରେ ଦୈନନ୍ଦିନ ଜୀବନର ବହୁ ଦେଖା-ଅଦେଖା, ଶୁଣା-ଅଶୁଣା, ଜଣା-ଅଜଣା ଘଟଣା, କୌତୁକପ୍ରଦ ସମସ୍ୟାର ସହଜ ସମାଧାନର ସୂତ୍ର ଏଥିରେ ସନ୍ନିବିଷ୍ଟ । ସାଧାରଣ ବିଜ୍ଞାନ, ଲୋକକଥା, ପୁରାଣ, ଅନୁଦିନର ଘଟଣାନୁଷଙ୍ଗରୁ ସଂଗୃହୀତ ନୀତି-ଉପଦେଶ ଭରା କୌତୂହଳୀ ରଚନାରେ ନନ୍ଦ ସାର୍‌ଙ୍କ ଜୀବନ ଭାଷ୍ୟ ସତେକି ଉଦ୍‌ଗୀତ ।

ଦ୍ୱନ୍ଦ-ପ୍ରତିଦ୍ୱନ୍ଦକୁ ନେଇ ରଚିତ ଦୁଇଟି କବିତା ଥିଲା ପିଠାମାନଙ୍କର ପରସ୍ପର ମଧ୍ୟରେ କଳି । ଏଣ୍ଡୁରି ପିଠା ବାଜି ମାରିନେଇଛି । ପୁର ପଶା ମଣ୍ଡା ଓ କାକରା, ଦୁଧ ସରିସାରେ ସରୁ ଚକୁଳି ଯାହା ଗୋଟାଏ ପାକୁଳିରେ ପେଟକୁ ପଶିଯାଏ । ହେଲେ ହଳଦୀ ପତର ଲୁଗା ପିନ୍ଧା ଏଣ୍ଡୁରୀ ଅତୁଳନୀୟ ଓ ଅପ୍ରତିଦ୍ୱନ୍ଦୀ । ସେମିତି ଯାନବାହାନ ଭିତରେ ଶଗଡଟି ନିଆରା । ଯା ପାଇଁ ପକ୍କା ସଡକ, ବିଧିବଦ୍ଧ ଲାଇନ୍ ଅନାବଶ୍ୟକ । ଏହି ମନ୍‌ଚଲା ଗାଡିଟା ନିଜ ଗୁଳା ନିଜେ ତିଆରି କରେ ।

ସେଦିନ ଖଲ୍ଲିକୋଟ ଗଡର ସିଂହ ଘର ମଟରଗାଡ଼ିଟିଏ ଚଳାଇବାରୁ ମାଗୁଣିର ଶଗଡ ଅଚଳ ହୋଇଗଲା । ଅଚଳ ହୋଇଗଲା ତାର ଜୀବିକା ଓ ଜୀବନ । ଯାନ୍ତ୍ରିକ ଷଡଯନ୍ତ୍ରର ଶିକାର ଆଧୁନିକ ମଣିଷର ଜ୍ୱାଳା ଓ ଯନ୍ତ୍ରଣା ଉପଶମ ଲକ୍ଷ୍ୟରେ ନନ୍ଦସାର୍‌ଙ୍କ ଏ କବିତାରେ ପ୍ରଚ୍ଛନ୍ନ ଇଙ୍ଗିତ ନାହିଁ କି ?

ବହୁଦିନ ପରେ ଗୋପୀନାଥ ମହାନ୍ତି ତାଙ୍କର ଦିଗଦିହୁଡିରେ ଓଡିଆ ରାନ୍ଧଣାର ଦୁର୍ଦ୍ଦଶା କଥା କହିଛନ୍ତି । କାହିଁ ଗଲା ଆମ ଛୁଞ୍ଚିପତର ପିଠା, କାହିଁଗଲା ଆରିସା, ମଣ୍ଡା, ଏଣ୍ଡୁରୀ, ମାଲପୁଆର ସ୍ୱାଦ ? ତା ସ୍ଥାନରେ ଇଡିଲି, ଦୋଷା, ଉପମା ପହଞ୍ଚିଲା । ଆମର ରୁଚି ଓ ସ୍ୱାତନ୍ତ୍ର୍ୟ କିଏ ଲୁଟିନେଲା ଆମର ଅଜ୍ଞାତରେ ? ପିଠା କଳି ଆଳରେ ଆମର ରୁଚିର ପ୍ରତିଦ୍ୱନ୍ଦିତାର ଆଭାସ ନାହିଁ ତ ?

ବିଜ୍ଞାନକୁ ନେଇ କବିତାଟିଏ ଥିଲା 'ଗଛର ଜୀବନ ଅଛି କି ନାହିଁ '। ଆଈ ନାତି ମଧ୍ୟରେ ଏ ବଚସା ନୂଆ ପାଠ ପଢୁଥିବା ପିଲାଟି ହୁଏତ ଆଈର ସାଧାରଣ ଜ୍ଞାନ ପରୀକ୍ଷା ପାଇଁ ବିଧିବଦ୍ଧ ଯୋଜନାଟିଏ ପ୍ରସ୍ତୁତ କରିଛି।

ଗଛର ଜୀବନ ଅଛି କି ନାହିଁ
କହିଲୁ ଆଈ
ନାହିଁରେ ନାହିଁ ଗଛ ବୁରୁଛର ଜୀବନ ନାହିଁ
କହିଲା ଆଈ

ପିଲାର ଦୃଢୋକ୍ତି ଥିଲା –

ବହିରେ ଅଛି, ମୁଁ ପଢିଛି
ଗଛର ପରାଲୋ ଜୀବନ ଅଛି।

ପ୍ରତ୍ୟୁତ୍ତରିଛି ଆଈ –

ଗଛଟା କଣ କଥା କହୁଚି
ନା ବାଟ ଚାଲୁଛି
କେମିତି କହିଲୁ ଜୀବନ ଅଛି ?

ଅତୀତରେ ଏହି ଅସ୍ୱୀକାର ଭବିଷ୍ୟତର ଭାବନାକୁ ପ୍ରତିବନ୍ଧିତ କରିନାହିଁ। ବୁଢୀ ଶେଷରେ କହିଛି, ''ବାପା ତୋର ଆସୁ/ଅଙ୍କାବଙ୍କା କଥା ସେ ବୁଝିବ।'' ତିନି ପୀଢିର ଏ ସଂପର୍କ ଦେଇ ଜୀବନ ମଧ୍ୟରେ ଥିବା ବ୍ୟବଧାନରେ ସୀମା ସଂକୁଚିତ ହୋଇଛି। ବର୍ତ୍ତମାନର ପୃଷ୍ଠଭୂମିରେ ପରାଭୂତ ଅତୀତ ଭବିଷ୍ୟତକୁ ବାଟ ଛାଡି ଦେଇଛି।

ଶିଶୁ ମନୋରଞ୍ଜନର ଅସ୍ତ୍ରରୂପେ ସାଧାରଣତଃ ତିନିଟି ' F ' କୁ ନିଆଯାଏ। Falsehood, Fidelity, Fantacy - ନାନା କୌତୁକ ହାସ୍ୟଭରା ମିଥ୍ୟା କଥା ଶିଶୁ ମନୋରଞ୍ଜନର ସାଧନ। ଏଗୁଡିକ ନିରାଧାର ନୁହନ୍ତି ଶିଶୁର ତରଳ ମନରେ ସୁରୁଚି ଓ ସୁନୀତି ପ୍ରତି ଅନୁରାଗ ସୃଷ୍ଟି କରିବା ଓ ଏହାକୁ ଜୀବନ କ୍ଷେତ୍ରରେ ଉପଯୋଗ କରିବାର ସୂକ୍ଷ୍ମ ଆଶା କରି ପରିପୋଷିଛନ୍ତି। ପରବର୍ତ୍ତୀ କାଳରେ ରଚିତ ସମଗ୍ର କବିତାରେ ଏହି ଭାବାନୁଷଙ୍ଗର ଶୁଶ୍ରୂଷା ରହିଛି।

ମୁଁ ବହୁଦିନ ଧରି ଗାଁରୁ ଦୂରରେ ଥିଲି। ପ୍ରଥମ ସରକାରୀ ଚାକିରୀ ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜରେ। ମୋର ସୌଭାଗ୍ୟ ଜଗନ୍ନାଥଙ୍କ କରୁଣାରୁ ମୋର ଗୁରୁଦର୍ଶନ ଅନେକାନେକ ଥର ଘଟିଛି। ଯାଇଛନ୍ତି ଉମାନାଥ ସାର, ଯାଇଥିଲେ ଗୌରାଙ୍ଗ ସାର୍ ଓ ଯାଉଥିଲେ ନନ୍ଦ ସାର୍। ନନ୍ଦ ସାର୍ ତାଙ୍କର ଜଣେ ସାଂସ୍କୃତିକ ଓ ସାହିତ୍ୟିକ ଉତ୍ତରାଧିକାରୀ ଭାବରେ ମତେ ନେଇଥିଲେ। ସେଥିପାଇଁ ସାନିଧ୍ୟ ଓ ସଦିଚ୍ଛା ଅଯାଚିତ ଭାବରେ ଦେଇଛନ୍ତି।

ନନ୍ଦ ସାର୍ ଆପାତ ରୁକ୍ଷ, ଅନୁଦାର ଓ ମିତଭାଷୀ ଆଦର୍ଶନିଷ୍ଠ ବ୍ୟକ୍ତି । ଆଦୌ୍ୟବ ମରଣମସ୍ତୁ ଯୁଗାନ୍ତରେ ବା, ସେ କୁତ୍ରାପି ନ୍ୟାୟ ପଥରୁ ପଦେ ସୁଦ୍ଧା ପ୍ରବିଚଳିତ ହୋଇନାହାନ୍ତି । ତେବେ ତାଙ୍କର ରୁକ୍ଷତା ତାଙ୍କର ଆଦର୍ଶବାଦୀ ଜୀବନର ଏକ ଅବିଚ୍ଛେଦ୍ୟ ବିଭାବ ଥିଲା । ପ୍ରଖର ପରୁଷତା ସହିତ ଅନାବିଳ ସ୍ନେହଶୀଳତା ତାଙ୍କର ବ୍ୟକ୍ତିତ୍ୱକୁ ରୁଦ୍ର-ସୁନ୍ଦର କରିଥିଲା । କବି କେବେ ନିଷ୍ଠୁର ହୁଏ ନାହିଁ । ଏହି ଅନୁଭବ ମୋର ପରେ ହେଲା ।

ଓଡିଶାର ବହୁ ଦୁରନ୍ତ ସ୍ଥାନରେ ମୁଁ ମୋର କର୍ମମୟ ଜୀବନ ବିତାଇଛି । ବିକ୍ରମ ଦେବ କଲେଜ ଜୟପୁରରେ ଥିବାବେଳେ ହଠାତ୍ ଗୋଟିଏ ପତ୍ରିକା ପୃଷ୍ଠାରେ ନନ୍ଦ ସାର୍‌ଙ୍କ କବିତାଟି ଅନ୍ୟ କାହା ନାମରେ ବାହାରିଥିବାର ଦେଖିଲି । କବିତାଟି ଅବିକଳ ଉଠରା ଯାଇଛି : ''କୁନି ନାନୀଟା ମୋ ସକସକ, ଭାତ ହୋଇ ନାହିଁ ଧକ ଧକ'' ଇତ୍ୟାଦି ।

ସାର୍‌ଙ୍କୁ ଚିଠିଟିଏ ଲେଖିଲି । ଉତ୍ତର ମିଳିଲା ନାହିଁ । ବହୁ ଦିନ ପରେ ଥରେ ବାଲିଚନ୍ଦ୍ରପୁର ବଜାରରେ ସାର୍‌ଙ୍କ ସାଙ୍ଗରେ ଦେଖାହେଲା । କହିଲେ - ତୋ ଚିଠି ପାଇଛି । କିନ୍ତୁ କଣ କରିବା, ଚୋରୀ ରେ ସାହିତ୍ୟ ସଂସାର ଚାଲିଛି । ପ୍ରତିବାଦ କଥା କିଏ ଶୁଣିବ, ଛାପିବ, ପଢିବ ? ଅଭାବ, ଅନଟନ, ଦୁଃଖ, ଦୁର୍ବିପାକର ପୂର୍ଣ୍ଣ ବଳୟ ମଧ୍ୟରେ ସାର୍‌ଙ୍କ ଜୀବନ କଟିଛି । ପରିବାର ପ୍ରତିପୋଷଣ, ଝିଅ ବାହାଘର, ପୁଅମାନଙ୍କୁ ମଣିଷ କରିବା ପରି ଅନେକ ସାଂସାରିକ ଦାୟିତ୍ୱ ତାଙ୍କ ସାଧନା ପଥରେ ଅନ୍ତରାୟ ହୋଇନାହିଁ । ରୂପକ, ନାଟିକା, ଗୀତିକବିତା ମଧ୍ୟରେ ମନୋରଂଜନାତ୍ମକ ନୀତ୍ୟୁପଦେଶକୁ ସେ ଅଭିବ୍ୟକ୍ତି ଦେଇଛନ୍ତି । ତାଙ୍କର ଲେଖନୀ ଥିଲା ଅଜସ୍ରସ୍ରାବୀ । ଜୀବନର ଶେଷ ପର୍ଯ୍ୟନ୍ତ ସେ ଲେଖୁଥିଲେ । ଏହି ଲେଖା ଭିତରେ ମଣିଷ ଜୀବନର ଶ୍ରେୟ ଓ ଧ୍ୟେୟ ସେ ନିରନ୍ତର ଅନ୍ୱେଷଣ କରିଛନ୍ତି । ସାମାଜିକ, ବ୍ୟକ୍ତିଗତ ଓ ସାମୂହିକ ଜୀବନର ସବୁତକ କରଣୀୟ ଓ ବରଣୀୟ ଶ୍ରେୟ ଦିଗକୁ ସେ ତାଙ୍କ ରଚନାରେ ନିର୍ଦ୍ଦେଶିତ କରିଛନ୍ତି । ସବୁକଥାର ହିସାବ ମୋ ପାଖରେ ନାହିଁ । ତେବେ ମତେ ସବୁଠାରୁ ଭଲଲାଗେ ଏହି କବିତାର କେଇପଦ :

''ଅଜା ପଚାରିଲେ ଆଈକି
ସେ ଘରେ ତ କେହି ଗୋଟିଏ ନାହିଁ
ପଙ୍ଖାଟା ଘୂରୁଛି କାହିଁକି ?
ଟି.ଭି. ବି ଲାଗିଛି ସେ ଘରେ
କେହି ତ ଦେଖୁନ ଲାଗିଛି ଟି.ଭି.
ତମେ ତ ବସିଛ ଏ ଘରେ ।''

ଅସାବଧାନତା ଓ ଅନବଧାନତା ହେତୁ ଜାତୀୟ ସମ୍ବଳର ଯେଉଁ ଅପଚୟ ଘଟୁଛି ତାର ସୂଚନାଟିଏ ଏଥିରେ ରହିଛି ।

କବିତା ଆଲୋଚନାର ଅବକାଶ ମୋର ନାହିଁ । ଅନେକ ଗୁରୁଙ୍କର ଆଶିଷରେ ମୋର ଜୀବନ ଧନ୍ୟ ହୋଇଛି । ନନ୍ଦ ସାର ସେମାନଙ୍କ ମଧ୍ୟରୁ ଜଣେ ହେଲେ ହେଁ ମୋ

ପାଇଁ ସେ ଅନନ୍ୟ ଓ ଅଦ୍ୱିତୀୟ। ଆଜିର ପ୍ରତାରଣାମୟ ଯୁଗ ଓ ଜଗତ୍ ପ୍ରତି ଦୃଷ୍ଟି ଦେଲେ, ଆମ ସମୟର ଗୁରୁମାନଙ୍କର କର୍ମନିଷ୍ଠା, ଶ୍ରଦ୍ଧା, ସଦିଚ୍ଛା, ଏକାଗ୍ରତା ଓ କାର୍ଯ୍ୟଦକ୍ଷତା ଅତୀତର ଏକ ସ୍ୱପ୍ନିଳ ଅବାସ୍ତବତା ପରି ମନେ ହେବ। କଠୋର ଗୁରୁବ୍ରତ, ଅନମନୀୟ ବ୍ୟକ୍ତିତ୍ୱ, ଶୁଚିଦୀପ୍ତ ରୁଚି, ପ୍ରଜ୍ଞା-ପିଣ୍ଡିତ ସାଧନାପରକ କର୍ମଯୋଗ ପାଳନରେ ମୋର ପରମ ପ୍ରିୟ ସ୍ୱର୍ଗୀୟ ଗୁରୁଦେବ ନମସ୍ୟ ନନ୍ଦ କିଶୋର ସାମଲ ଯେଉଁ ନିଷ୍ଠା ପ୍ରଦର୍ଶନ କରିଛନ୍ତି ତାର ସହଜ ବିକଳ୍ପଟିଏ ସର୍ବଦା ଦୁର୍ଲଭ। ❑❑❑

ପ୍ରାଧ୍ୟାପକ, ଓଡ଼ିଆ ବିଭାଗ
ରେଭେନ୍ସା କନିଷ୍ଠ ମହାବିଦ୍ୟାଳୟ, କଟକ

# ସେଇ କବି ଅକ୍ଷୟ ଅମର

ରବୀନ୍ଦ୍ର ନାଥ ସାହୁ

ବାତ୍ୟା ଉଡ଼ାଇ ନେଲା
ନୂଆଁଣିଆ ଚାଳଘର,
ବନ୍ୟା ଧୋଇ ଦେଲା
ଆସବାସ ତା'ର
ଦୁଃଖ ଥରାଇଲା ତାହାର ଅନ୍ତର।
ଅକ୍ଷତ ରହିଲା କିନ୍ତୁ
ତା' କ୍ଷୁଦ୍ର ଲେଖନୀ,
ସୃଷ୍ଟି କରି କରି ସତ୍ୟ ଚିରନ୍ତନୀ।
ସେ ଥିଲା ରୂପର କବି
ରୂପାୟିତ କଲା ହୃଦୟର ଛବି।
କବି ସିଏ ସବୁରି ପ୍ରାଣର,
ରଖିଥିଲା ଅଲୋଡ଼ା ବସ୍ତୁର ଖବର।
ପ୍ରେମ-ପ୍ରଣୟ ଓ ମିଳନ-ବିରହ
ଲେଖନୀର ମୁନେ ହେଲା ଏକାକାର।
ଢ଼ିଙ୍କି-ଚକି, ଶିଳ-ଶିଳପୁଆ
ଢ଼ିବି ଆଳୁଅରେ
କୋଳଥ ଯାଉ ଖିଆ
କବିତାର ଆଗେ ହେଲା ଥୁଆ।
ନଈ ପଠାର କାଶତଣ୍ଡୀ ଫୁଲ
ତା' ଗୀତରେ ହୋଇଲା ଗୋଲାପ।
ଜନମ ଥିବାରୁ ଜୀବନ
ମରଣ ଥିବାରୁ ମରଣ
ତା'ର ମଧ୍ୟେ ସେହି କବି
ଅକ୍ଷୟ ଅମର।

❑❑❑

ଅବସର ପ୍ରାପ୍ତ ଶିକ୍ଷକ, କୁସୁପୁର

# ସାରସ୍ୱତ ସାଧକ ନନ୍ଦ କିଶୋର

ଡଃ. କୈଳାସ ଚନ୍ଦ୍ର ବେହେରା

କଟକ ଜିଲ୍ଲାର ମାହାଙ୍ଗା ଥାନା ଅଞ୍ଚଳ ସମଗ୍ର ଓଡ଼ିଶାର ଏକ ସୁପ୍ରସିଦ୍ଧ ସାରସ୍ୱତ ଓ ସାଂସ୍କୃତିକ ତୀର୍ଥ ଭୂମି। ଆଦି ନାଟ୍ୟକାର ଜଗନ୍ ମୋହନ ଲାଲ, ଆଚାର୍ଯ୍ୟ ପ୍ୟାରୀମୋହନ, ବାଗ୍ମୀ ବିଶ୍ୱନାଥ କର, ଗଣକବି ବୈଷ୍ଣବ ପାଣି, ଗାଳ୍ପିକ ପ୍ରାଣବନ୍ଧୁ ସାମଲ ପ୍ରମୁଖ ଏ ମାଟିରେ ଜନ୍ମ ଗ୍ରହଣ କରି ନିଜ ନିଜ ସାଧନା ବଳରେ ସ୍ୱନାମଧନ୍ୟ ହେବା ସଙ୍ଗେ ସଙ୍ଗେ ଜନ୍ମ ମାଟିକୁ ମହିମା ମଣ୍ଡିତ କରି ଯାଇଛନ୍ତି। ପୁନଶ୍ଚ ମାହାଙ୍ଗା ଅଞ୍ଚଳରେ କୁସୁପୁର ଗ୍ରାମର ସ୍ୱାତନ୍ତ୍ର୍ୟ ଅବଶ୍ୟ ସ୍ୱୀକାର୍ଯ୍ୟ। ଏହି ଗ୍ରାମ ଜନ୍ମ ଦେଇଛି, ପଲ୍ଲୀକବି ନନ୍ଦ କିଶୋର ବଳ, ଶିଳ୍ପୀଗୁରୁ ବିମ୍ବାଧର ବର୍ମା, ଆଧୁନିକ କବି ଜ୍ଞାନୀନ୍ଦ୍ର ବର୍ମା ଏବଂ ଔପନ୍ୟାସିକ ରାଜେନ୍ଦ୍ର ବର୍ମାଙ୍କୁ। ଏ ମାଟି ତାର ଐତିହ୍ୟ ବଜାୟ ରଖିବାରେ ସତତ ଉଦ୍ୟମଶୀଳ ବୋଲି କବି ନନ୍ଦ କିଶୋର ସାମଲ ପ୍ରମାଣ କରିଦେଇ ଯାଇଛନ୍ତି । ସେ ଯେ ନିଶ୍ଚିନ୍ତ ରୂପେ ତାଙ୍କ ପୂର୍ବସୂରୀମାନଙ୍କର ଉପଯୁକ୍ତ ଦାୟାଦ ତାହା ତାଙ୍କ ସାରସ୍ୱତ କୃତିରୁ ସ୍ୱତଃ ପ୍ରମାଣିତ।

କୁସୁପୁର – ଚତୁପାର୍ଶ୍ୱରେ ପ୍ରକୃତି ରାଣୀର ଅପୂର୍ବ ସୁଷମା। କଳ ନିନାଦିନୀ ବିରୂପା। ତାରି କୂଳେ କୂଳେ ଲମ୍ବିଯାଇଛି ପିଙ୍ଗୁଳେଇ ବନ୍ଧ। ନଈ ମଝିରେ ଜଟିଆ କୁଦ। ଅଦୂରରେ ଲଳିତଗିରି, ଆଲମଗିରି, ଲଣ୍ଡାପାହାଡ ଇତ୍ୟାଦି। ଏ ସବୁର ମିଳିତ ସୌନ୍ଦର୍ଯ୍ୟ ପ୍ରକୃତିର ଚିତ୍ରଶାଳା ପରି ମନେ ହୁଏ। ଏହି ଛବିଳ, ମନମୁଗଧକର ପରିବେଶ କିଶୋର ନନ୍ଦ କିଶୋରଙ୍କୁ ପରିଣତ କରି ଦେଇଥିଲା କବି, ନାଟ୍ୟକାର ଓ ଶିଳ୍ପୀ ଭାବରେ।

୧୯୨୫ ମସିହା ଜୁନ ମାସ ୧୨ ତାରିଖରେ ପ୍ରସିଦ୍ଧ ସାରସ୍ୱତ ସାଧକ ନନ୍ଦ କିଶୋର ସାମଲଙ୍କ ଜନ୍ମ। ପିତା ହରେକୃଷ୍ଣ ସାମଲ, ମାତା ପଦ୍ମା ଦେଈ। ବାଲ୍ୟକାଳରୁ ନନ୍ଦକିଶୋର ଦାରିଦ୍ର୍ୟ ପ୍ରପୀଡ଼ିତ। ଶିକ୍ଷା କ୍ଷେତରେ ବାରମ୍ବାର ବିଚ୍ଛିନ୍ନତା ସତ୍ତ୍ୱେ କବି ବି.ଏ., ବି.ଇଡି. ଯୋଗ୍ୟତା ହାସଲ କରିଥିଲେ ନିଜର ଅଧ୍ୟବସାୟ ବଳରେ। ନନ୍ଦ କିଶୋର ବିଦ୍ୟାମନ୍ଦିର, କୁସୁପୁରରୁ ଶିକ୍ଷକତା ଆରମ୍ଭ କରି କେନ୍ଦୁଝର ଦେଓଗାଁ ଉଚ୍ଚ ଇଂରାଜୀ ବିଦ୍ୟାଳୟ, ରିମୁଳୀ ବିଦ୍ୟାଳୟ, ଜି.ଏସ୍ ବିଦ୍ୟାପୀଠ, ସିଦ୍ଧେଶ୍ୱର ପୁର, ଗାନ୍ଧୀ ଶିକ୍ଷାଶ୍ରମ, ଚମ୍ପାପୁର ଇତ୍ୟାଦି ଶିକ୍ଷାନୁଷ୍ଠାନରେ କାର୍ଯ୍ୟ କରି ଶେଷରେ ନିଜ ଗାଁ ସ୍କୁଲ ନନ୍ଦ କିଶୋର ବିଦ୍ୟାମନ୍ଦିର କୁସୁପୁରରୁ ଅବସର ଗ୍ରହଣ କରିଛନ୍ତି। ସବୁ ସ୍ଥାନରେ ନନ୍ଦ କିଶୋର ଛାଡ଼ି ଆସିଛନ୍ତି ଅପୂର୍ବ କୃତିତ୍ୱ ଆଉ ସହୃଦୟତାର ସ୍ମୃତି ଚିହ୍ନ।

୧୯୩୯ ମସିହାରେ ନନ୍ଦ କିଶୋର ମାଇନର ଛାତ୍ର। ତାଙ୍କର ଶିକ୍ଷକ ରଘୁନାଥ ପଣ୍ଡା ଛୋଟ ଛୋଟ ନାଟକ ଲେଖି ବିଦ୍ୟାଳୟରେ ଅଭିନୟ କରାଉଥାନ୍ତି। ନନ୍ଦି କିଶୋର

ତାହା ଦ୍ୱାରା ବହୁମାତ୍ରାରେ ପ୍ରଭାବିତ ହୋଇଥିଲେ। ବୈଷ୍ଣବ ପାଣିଙ୍କ ଗୀତିନାଟ୍ୟ, ରାଧାନାଥ ଗ୍ରନ୍ଥାବଳୀ ଇତ୍ୟାଦି କେତେକ ସାହିତ୍ୟ ଗ୍ରନ୍ଥ ତାଙ୍କୁ ନାଟକ ଓ କବିତା ରଚନା ପାଇଁ ପ୍ରେରଣା ଯୋଗାଇ ଥିଲା। ମାତ୍ର ୧୬ ବର୍ଷ ବୟସରେ ସେ ରଚନା କରିଥିଲେ ନାଟକ କୁମାର ସମ୍ଭବ। ନାଟକର ଅଭିନୟ ରଜନୀରେ ନିମନ୍ତ୍ରିତ ଅତିଥି ଶିଳ୍ପୀ ବିମ୍ବାଧର ବର୍ମା ଓ କବି ମାୟାଧର ମାନସିଂହ, ନନ୍ଦ କିଶୋରଙ୍କ କୃତିକୁ ବିପୁଳ ପ୍ରଶଂସା କରି ତାଙ୍କୁ ସାହିତ୍ୟ ସୃଷ୍ଟି କରିବାକୁ ଯଥେଷ୍ଟ ଉତ୍ସାହିତ କରିଥିଲେ। ଫଳରେ ପରେ ପରେ ତାଙ୍କ ଲେଖନୀରୁ ସୃଷ୍ଟି ହୋଇଥିଲା 'ସାବିତ୍ରୀ' ଓ ବଂଗଳାରୁ ଅନୁଦିତ ନାଟକ 'ଆତ୍ମାହୁତି'। ତା'ପରେ ଗାଉଁଲି ଗୀତ ଓ ବଉଳର ଚିଠି ପ୍ରକାଶିତ ହେଲା। ପରବର୍ତ୍ତୀ ସମୟରେ ଯେଉଁ ଲୋକପ୍ରିୟ ପୁସ୍ତକ ପ୍ରକାଶିତ ହୋଇଛି ସେଗୁଡିକ ହେଲା ଗୁଣ୍ଡୁଚି ମୂଷାର ପିଠିରେ ଗାର, ପଲ୍ଲୀକବି ରୂପକ, ସରଗଫୁଲ, ମୁ କହିବି କଥାଟିଏ ତୁ କହିବୁ ହୁଁ, ଆମେ ଏ ମାଟିର ସୁନା ଫରୁଆ, ମତେ ଯେତେବେଳେ ଦଶ ବରଷ, ଆମ ଲାଗି ଯିଏ ଶହୀଦ ହେଲେ, ହସି ହସାଇବା ଧରା, ମୋ ଗାଁ ମୋ ଘର, ଇତ୍ୟାଦି ଇତ୍ୟାଦି।

୧୯୬୨ ମସିହାରୁ ଆଦ୍ୟାବଧି ଓଡିଶା ସରକାରୀ ପାଠ୍ୟ ପୁସ୍ତକରେ ନନ୍ଦ କିଶେରଙ୍କ ବହୁ ବିଷୟ ସ୍ଥାନୀତ। ତନ୍ମଧ୍ୟରୁ 'ଆମଘର' କବିତା ଏତେ ପ୍ରସିଦ୍ଧ ଯେ କେବଳ ଏହି କବିତାଟି ଯୋଗୁ ସେ ସାରା ଓଡିଶାରେ ପରିଚିତ ହୋଇଯାଇଛନ୍ତି କହିଲେ ଭୁଲ ହେବ ନାହିଁ। ସମଗ୍ର କବିତାଟି ନିଛକ ଚିତ୍ରରେ ଚିତ୍ରିତ।

ଏଇ ଘରଟିରେ ଜନମ ମୋର
ମାଟି ଚାଳଘର ନଡା ଛପର
ଏଇ ଘରେ ଆମେ ଏକାଠ ବସୁ, ଏକାଠି ହସୁ-
ଏଇଟି ଆମର ରୋଷେଇ ଘର
ରଖିବା ତାହାକୁ ସଫାସୁତର
ଏଇ ଘରେ ମା ପରିବା କାଟେ,
ବେସରବାଟେ ଜାଇ ରଗଡେ
ଶାଗ ଖରଡେ ଗଢଇ ପିଠା –
ଆରିସା କାକରା ଆହାକି ମିଠା ଇତ୍ୟାଦି

କେବଳ ଏଇ ପଂକ୍ତି କେତୋଟି ନୁହଁ ସମଗ୍ର କବିତାଟି ଖୁବ୍ ମର୍ମ ସ୍ପର୍ଶୀ। ଏତଦ୍ ବ୍ୟତୀତ 'ମହାନଦୀର ନିଜ କଥା' ଦ୍ୱିତୀୟ ଶ୍ରେଣୀ ପୁସ୍ତକରେ, ୬ଷ୍ଠ ଶ୍ରେଣୀ ସାହିତ୍ୟ ବହିରେ ପାଦୁକା ପୂଜା, ଆଦିବାସୀ ଆମେ ଆଦିବାସୀ, ବାଗ୍ମୀ ବିଶ୍ୱନାଥ, ବଡ ଲୋକଙ୍କ ଜୀବନ କଥା ପୁସ୍ତକରେ ଉତ୍କଳ ଗୌରବ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁ, କବିବର ରାଧାନାଥ, ଶିଳ୍ପୀ ବିମ୍ବାଧର ଇତ୍ୟାଦି ସ୍ଥାନୀତ ହୋଇଛି। Language Writer ଭାବରେ୧୯୬୫ ମସିହାରେ ସେ ୫ମ ଶ୍ରେଣୀ ପାଇଁ ଓଡିଶା ସରକାରଙ୍କ ଦ୍ୱାରା ମନୋନୀତ

ହୋଇଥିଲେ।

ଓଡିଶାର ସବୁ ପ୍ରସିଦ୍ଧ ଶିଶୁ ପ୍ରତ୍ରିକାରେ ନନ୍ଦ କିଶୋର ସାମଲଙ୍କ ଲେଖା ପ୍ରକାଶିତ ହୋଇଛି। ଆକାଶବାଣୀ କଟକ କେନ୍ଦ୍ରର ସେ ଥିଲେ ଜଣେ ସ୍ୱୀକୃତି ପ୍ରାପ୍ତ ଗୀତିକାର । ତାଛଡା ସେ ଆକାଶବାଣୀର ବିଭିନ୍ନ ବିଭାଗର କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରି ଦକ୍ଷତା ପ୍ରତିପାଦନ କରିଛନ୍ତି।

ଶିଶୁ ସାହିତ୍ୟ ବ୍ୟତୀତ ନନ୍ଦ କିଶୋରଙ୍କର ବହୁ ନାଟକ, ଗୀତିନାଟ୍ୟ, ରୂପକ ଓ ଗୀତିନାଯଟ୍ୟ ରଂଗମଞ୍ଚ ଠାରୁ ଆରମ୍ଭ କରି ବେତାର ଓ ଦୂରଦର୍ଶନରେ ରୂପାୟିତ ହୋଇଛି। ସେଗୁଡିକ ହେଲା, କୁମାର ସମ୍ଭବ, ଚଷାପୁଅ, ସାବିତ୍ରୀ, ସାଧବ ଝିଅ, ଶ୍ରୀୟା, ନୀଳମାଧବ, କଣାମାଠିଆ, ପଲ୍ଲୀକବି, ଶେଷ ଦ୍ୱାପର, ସୀତା, ହରିଶ୍ଚନ୍ଦ୍ର, ବାଲିରଥ, ମର୍ତ୍ତ୍ୟମଣ୍ଡଳେ ଦେହ ବହି, ମୃଗତୃଷ୍ଣା ଇତ୍ୟାଦି ଆହୁର ଅନେକ।

ନିଜର ବିପୁଳ ସାର୍ଥକ ସୃଷ୍ଟି ପାଇଁ କବି ନନ୍ଦ କିଶୋର, ୧୯୯୫ ମସିହାରେ ଓଡିଶା ସାହିତ୍ୟ ଏକାଡେମୀ ପକ୍ଷରୁ ଶିଶୁ ସାହିତ୍ୟ ବିଭାଗରେ ପୁରସ୍କୃତ ହୋଇଥିଲେ। ଏତଦ୍ ବ୍ୟତୀତ ଓଡିଶାର ବହୁ ପ୍ରତିଷ୍ଠିତ ସାହିତ୍ୟ ଅନୁଷ୍ଠାନ କବିଙ୍କୁ ବିଭିନ୍ନ ସମୟରେ ମର୍ଯ୍ୟାଦାଜନକ ସମ୍ମାନ ତଥା ପୁରସ୍କାର ପ୍ରଦାନ କରିଛନ୍ତି । ସଂଖ୍ୟାରେ ତାହା ଅର୍ଦ୍ଧ ଶତକରୁ ଅଧିକ।

ଅତି ସାଧାରଣ ଜିନିଷ, ସାଧାରଣ ଘଟଣାକୁ ନେଇ କବି ନନ୍ଦ କିଶୋର ଚମତ୍କାର କବିତା ସୃଷ୍ଟି କରିବାରେ ସିଦ୍ଧ ହସ୍ତ । ଶୁଖିଲା ପତ୍ର କେତେ ନଗଣ୍ୟ। କିନ୍ତୁ କବିଙ୍କ ଲେଖନୀ ତାକୁ କେତେ ଉଚ୍ଚକୁ ଉଠେଇଚି, ତାହା ବିଚାର୍ଯ୍ୟ–

ତୋଟାରେ ମୁଁ ଶୁଖିଲା ପତର
ଶୁଖି ଶୁଖି ସଳିତା ହେଲିଣି
ମୋତେ ତୁମେ ଗୋଟେଇ ନିଅରେ
ମୁହିଁ ହେବି ବଢିଆ ଜାଳେଣି।

ସେହିପରି ପିଠାମାନଙ୍କ ମଧରେ କଳି ଲଗେଇ ଦେଇ କବି ଯେଉଁ ଆତ୍ମକଥା ମାନ ବାହାର କରି ଆଣିଛନ୍ତି ତାହା ବେଶ ମନଛୁଆଁ –

ହଳଦୀ ପତର ଲୁଗା କେ ପିନ୍ଧିଛି
ହେଜି ହେଜି କରି କହନି ?
ବାଲି ଉପରେ ତାଙ୍କର କବିତା
ପଥର ଥିଲି ମୁଁ ଗୋଡି ପାଲଟିଲି
ଆଜି ମୁଁ ପାଲଟି ଯାଇଚି ବାଲି
କୁଆଡୁକୁ ଇଏ ନବ ମତେ ଠେଲି

ନାହିଁ ଜାଣିଲି ରେ ନାହିଁ ଜାଣିଲି ।

ପରିବେଶ ସଚେତନଶୀଳ କବି ନନ୍ଦ କଶୋର ବହୁ କବିତା ଲେଖି ଆମ ପରିବେଶ ସୁରକ୍ଷା ପାଇଁ ବହୁ ଉପଦେଶ ଦେଇ ଯାଇଛନ୍ତି –

ଗଛ ବଢୁଛି, ଛୋଟିଆ ଗଛଟି ବଡ ହେଉଛି
ଡାଳ କାଟି ଦେଲେ କ୍ଷୀର ଝରୁଛି
କ୍ଷୀର ନୁହେଁମ ତା' ରକତ ସେଇ
କେମିତି କହୁଚୁ ଜୀବନ ନାହିଁ ।

ଛୋଟ ପିଲାର ଭାଷାରେ ସାମାଜିକ କୁ ସଂସ୍କାର ପ୍ରତି କି ତୀବ୍ର ପ୍ରତିବାଦ ସେ କହିଛନ୍ତ ଆମେତ ମଣିଷ ସିଏତ ମଣିଷ କବିତାରେ

'ଆମେ ତାକୁ କିଆଁ ଛୁଇବା ନାହିଁ
କଣ ହେଉଛି ତାର
ଆମେତ ମଣିଷ ସିଏତ ମଣିଷ
ଇଏ ମା କୋଉ ବିଚାର ?'

ସ୍ୱାଧୀନତାର ସଂଜ୍ଞା ନିର୍ଦ୍ଧାରଣରେ କବିଙ୍କ ମନ୍ତବ୍ୟ ବେଶ ମନନଧର୍ମୀ

'ସ୍ୱାଧୀନ ଦେଶର ମଣିଷ ତମେ
ସ୍ୱାଧୀନ ଦେଶର ପକ୍ଷୀ ଆମେ ଆମକୁ ବନ୍ଦୀ କରି
କେମିତି ଗାଉଛ ସ୍ୱାଧୀନତା ଗୀତ
ଜାତୀୟ ପତାକା ଧରି ?'

ଦୁଃଖ ଦୈନ୍ୟ ପ୍ରପୀଡିତ ହୋଇଥିବା ହେତୁ କବି ଗରିବ, ଖଟିଖିଆ ମୂଲିଆଙ୍କ ପ୍ରତି ଅତ୍ୟନ୍ତ ସମ୍ବେଦନଶୀଳ ଥିଲେ । ତାହା ନିମ୍ନ ପଂକ୍ତରୁ ଅନୁମେୟ–

'ଦିନକୁ ଦି'ଥର ନମିଳେ ଭାତ
ଶୁଖି ଶୁଖି ଆସେ ଦେହ ରକତ
ଚାଲିତ ନପାରେ ଆହା
କି କାମ କହିବି କି ମଣିଷ ହେବି
ପିଇ ପିଇ ନାଲି ଚାହା ?'

ପଲ୍ଲୀପ୍ରୀତି ତାଙ୍କର ଅନନ୍ୟ । ନିଜ ଗାଁ ପ୍ରତି ତାଙ୍କ ବ୍ୟାକୁଳତା ନିମ୍ନ ପଂକ୍ତିରୁ ସ୍ପଷ୍ଟ ହୁଏ ।

''ଭାରି ଭଲ ଲାଗେ ମତେ ମୋ ଗାଆଁ
ଆଲୁଅ ପବନ ତାର
ଯେଉଁଠି ରହିଲେ ଯୁଆଡେ ଗଲେ

ମନେ ପଡିଯାଏ ମୋର।''

ସ୍ୱାର୍ଥପର ମଣିଷର ରୂପାନ୍ତରଣ ପାଇଁ ଚମତ୍କାର କବିତା ସେ ଲେଖିଛନ୍ତି –

''ପରସେବା ଭୁଲିସାରିଲିଣି – ନିଜପାଇଁ ସବୁମୁଁ କରୁଛି
ମତେ ତୁମେ ଗଛଟିଏ କର – ପ୍ରଭୁ ତୁମ ଚରଣ ଧରୁଛି
ସେଇ ଠେଇଁ ଠିଆ ହୋଇରହି ଖରାବର୍ଷା କାକର ସହିବି
ମତେ ଯିଏ ହାଣୁ ଅବା ମାରୁ ତାକୁ ପଦେ କିଛି ନ କହିବି।''

ସ୍ୱାର୍ଥପର ମଣିଷର କୃତଘ୍ନତାକୁ ଅଂଗୁଳି ନିର୍ଦ୍ଦେଶ କରି ସେ କାଇଥିବା କବିତା ଅତ୍ୟନ୍ତ ପ୍ରଭାବଶାଳୀ

ମତେ ଯିଏ କଲା ଗାଈ
ତତେ ଦେଲା ସିଏ ମଣିଷ ଜନମ
କାହିଁକି ମୁଁ ଜାଣେ ନାହିଁ।

ଏ ସବୁ ଆଲୋଚନାରୁ ଆମେ ଏହି ସିଦ୍ଧାନ୍ତରେ ଉପନୀତ ହେବା ଠିକ୍ ହେବ ନାହିଁ ଯେ କବି ନନ୍ଦ କିଶୋର କେବଳ ଜଣେ ଶିଶୁ କବି। ତାଙ୍କର ଅନ୍ୟାନ୍ୟ ପୁସ୍ତକ ଅଦ୍ୟାବଧି ପାଠକ ଦୃଷ୍ଟିର ଅନ୍ତରାଳରେ ରହି ଯାଇଛି। ସେ ସବୁରେ ପାଣ୍ଡିତ୍ୟ, ବୌଦ୍ଧିକତା, ଗଭୀର ମନସ୍ତତ୍ତ୍ୱ, ବିସ୍ତୃତ ବିଚାରବୋଧ, ଅକାଟ୍ୟ ତାର୍କିକତା ଓ ନୂତନ ଚେତନାର ଝଲକର ସ୍ୱଷ୍ଟତା ଉପଲବଧ ହୁଏ। କବିଙ୍କର ଜୀବନ ଦର୍ଶନରୁ ଗୋଟିଏ ଉଦାହରଣ ନିଆଯାଇ ପାରେ।

ଦୁଃଖ ମୋର ଅଂଗରୁ ନିଭିନି
ନିଭିବାକୁ ଦେବି ନାହିଁ ତାରେ
ବହୁ ଲୋକ ଛାଡି ସେ ଆସିଚି
ମୋ ପାଖକୁ ଅତି ଆପଣାରେ।

ଜୀବନର ଅନ୍ତିମ ସମୟ ଆଡକୁ ମୃତ୍ୟୁ ଚେତନା କବି ପ୍ରାଣକୁ ଖୁବ୍ ଆନ୍ଦୋଳିତ କରିଥିଲା। ଶ୍ମଶାନକୁ ଲକ୍ଷ୍ୟକରି ସେ ଗାଇ ଉଠିଥିଲେ –

ଶମଶାନ ଥରେ ହସି ଉଠିଲାରେ
ମୋ ଆଡକୁ ଚାହିଁ
ସେଠି ଠିଆ ହେଲି ତାକୁ ପଚାରିଲି
କିଛି ସେ କହିଲା ନାହିଁ।

ସର୍ବଜୟୀ କାମର ଜୟଗାନ କବିବର ରାଧାନାଥ ରାୟଙ୍କର ''ଚନ୍ଦ୍ରଭାଗା'' କାବ୍ୟରେ ଉଦ୍‌ଘୋଷିତ ହୋଇଛି –

''ଯେ ଯେଡେ ତେଜସ୍ୱୀ ତା ତେଜ ମୋତେ ଅଛଇ ଜଣା
ଫୁଲ ଶର ଆଗେ ପଡିଲେ ବୁଦ୍ଧି ହୁଅଇ ବଣା।''

ଏ ପ୍ରସଂଗରେ କବି ନନ୍ଦ କିଶୋରଙ୍କ ବକ୍ତବ୍ୟ ହେଲା –
'ରୂପ ମୁଁ ଦେଖିଚି ନାରୀ ପୁରୁଷର ହାଡ କଙ୍କାଳ ସାର
ସେଇଠି ହାରିଚି ବିଶ୍ୱ ବିଜୟୀ ଫୁଲଧନୁ ଫୁଲ ଶର।'

ଏହିଭଳି ତାଙ୍କର ଅନେକ କବିତାରେ ଚିତ୍ରିତ କାବ୍ୟିକ ଦକ୍ଷତା ପ୍ରମାଣ କରେ ଯେ କବି ନନ୍ଦ କିଶୋର କେବଳ ଜଣେ ଶିଶୁ ସାହିତ୍ୟିକ ନଥିଲେ। ତାଙ୍କ ରଚିତ ଅନେକ ନାଟକ ଓ ରୂପକ ମାନଙ୍କରେ ମାନବଧର୍ମୀ ବହୁ ବକ୍ତବ୍ୟ ରହିଚି। ସେସବୁ ଆଲୋଚନା ସାପେକ୍ଷ।

ନିର୍ବିବାଦରେ ଏହା ଅନସ୍ୱୀକାର୍ଯ୍ୟ ଯେ କବି ନନ୍ଦ କିଶୋର ସାମଲ ଥିଲେ ବହୁମୁଖୀ ପ୍ରତିଭାର ଅଧିକାରୀ। ତାଙ୍କର ସମଗ୍ର ସାହିତ୍ୟର ଅନୁଶୀଳନ ଓ ପର୍ଯ୍ୟାଲୋଚନା ଓଡିଆ ସାହିତ୍ୟକୁ ନିଶ୍ଚିତ ରୂପେ ଋଦ୍ଧିମନ୍ତ କରିବ ଏହା ନିଃସନ୍ଦେହ। ❑❑❑

ନାନପୁର, ବାଲିଚନ୍ଦ୍ରପୁର, ଯାଜପୁର

# ଘାସ ପରି ନିବିଡ

ଡକ୍ଟର ଲାବଣ୍ୟ ଚନ୍ଦ୍ର ସାହୁ

କିଏ କହେ, ସିଏ ଏକା
ଶିଶୁ ଲାଗି, ଲେଖୁଥିଲେ କବିତା,
ନ ଥିଲା, ଭାଷାର ଭିଡ
ଥିଲା ଅବା, ସତେ 'ମଣିମୁକ୍ତା'
ଥାଏ ଯାହା, ବଙ୍କା ତେଢା
ଦେଉଥିଲେ, ନିଜ ହାତେ ସଜାଡ
ହସି ହସି, ଚାଟକୁ ସେ
ପାଠମହୁ, ଦେଉଥିଲେ ଅଜାଡି।
ନିଜ ପରି, ଲାଗେ ମୋତେ
ଥିଲେ ବି ସେ, ଦୂରନ୍ତର ପାହାଡ
'ମାଟି' ପରି ଚିହ୍ନା ଜଣା
ଥିଲା ସିଏ, 'ଘାସ' ପରି ନିବିଡ । ❑❑❑

୩୫, ବସନ୍ତ ବିହାର, ବ୍ରହ୍ମେଶ୍ୱର ମନ୍ଦିର ମାର୍ଗ, ଭୁବନେଶ୍ୱର

# ମହକ

ପ୍ରଭାତ କୁମାର କର

ସଜଫୁଲ ପରି
ନରମ ହସକୁ
ଯିଏ କଳି ପାରେ ତୁଳିରେ
କଞ୍ଚା କଣି ପରି
ନହକା ମନକୁ
ରଂଗ ଦେଲା ସିଏ କାଳିରେ ।୧।
ଗାଇ ଭାଷା
ଯିଏ ବୁଝି ପାରୁଥିଲା
ପକ୍ଷୀ ମନର ବ୍ୟଥା
ସବୁରି ମରମେ
ସିଏ ଭରିଦେଲା
ସ୍ୱାଧୀନ ମନରେ ସ୍ୱାଧୀନ ଚିନ୍ତା ।୨।
ଭୁଲି ନଥିଲେ ସେ
ଅତୀତର ସ୍ମୃତି
ମା’ ବୁଢ଼ୀର ସେ କଥା
ଶୁଣି ଥିଲେ ଯାହା
ତା’ କୋଳରେ ଶୋଇ
ବଡ଼ ଲୋକଙ୍କର ଗାଥା ।୩।
ସମାଜରୁ ସିଏ
ଯାହା ପାଇଥିଲେ
ଦେଲେ ସେ ତା’ଠାରୁ ଆହୁର ବେଶି
ଆଗାମୀ ପୀଢିର
ମନ ସିଲଟରେ
କେତେ ନୂଆଛବି ଆଙ୍କିଲେ ବସି ।୪।
ଜୀବନ ଆୟୁକୁ
ମହୁଫେଣା ଭାବି
ସଂଚିଗଲେ କେତେ ଜ୍ଞାନର ମହୁ
ଆମ ପାଇଁ ସିଏ
ଦେଇ ଗଲେ ଖାଲି
ଯିଏ ଯାହା ନେବ ସେଇଠୁ ନଉ ।୫।
ଏ ଜନମ ମାଟି
ମା’ଟି ତାହାର
ଗଢିଛି ସେନେହ ମମତା ଦେଇ
ମୁହଁରେ ତା’ର ହସ ଉକୁଟୁଛି
ଏମିତି ପୁଅର ସୁଗୁଣ ପାଇଁ ।୬।
ନନ୍ଦ ବଳାହେ
ନନ୍ଦ କିଶୋର
ତୁମେ ଅଟ ଏଇ ମାଟିର ଟେକ
ସାର୍ଥକ ତୁମ ଜନମ ଲଭିଛି
ସେଠୁ ଥାଇ
ଥରେ ନିରେଖି ଦେଖ ।୭।

❑❑❑

ଗୁଣ୍ଡୁପୁର, ମାହାଙ୍ଗା, କଟକ

# କହିତ ନୁହଁଇ ଭାରତୀରେ

ଗୋବିନ୍ଦ ଚନ୍ଦ୍ର ମହାପାତ୍ର

ହେ ବରେଣ୍ୟ ଭାରତୀ ପୂଜାରୀ
ସଫଳ ସାଧନା ତବ ସ୍ମୃତି ନୋହେ ପାଶୋରି ।୧।
ନିତି ନୂଆ କବିତା ଶୁଣାଉ ଥିଲ କମନ ଭୂମରେ
କିଏ ଜାଣିଥିଲା ଶିଶୁ ମନ କିଣି ନେବ ଦିନେ କଲମ ମୁନରେ ।୨।
ତାଳ ଛନ୍ଦେ ଗୁନ୍ଥା କେତେ ଗୀତିନାଟ୍ୟ ମାଳା
ଅଭିନୀତ ରଙ୍ଗମଞ୍ଚେ କୀରତି ଅଭୁଲା ।୩।
ଗୁଣ୍ଡୁଚି ମୂଷାର ପିଠିରେ ଗାର
କିପରି କହିଲା ମନେ ତୁମର ।୪।
ଗୋଟିଏ ଗାଁର ଦୁଇ କୁମର
ଉଭୟଙ୍କ ନାଁ ନନ୍ଦ କିଶୋର ।୫।
ବଳେ ପଲ୍ଲୀ କବି ନାମେ ବିଖ୍ୟାତ
ଶିଶୁ ସାହିତ୍ୟିକ ତୁମ କୃତୀତ ।୬।
ସରଳ କୋମଳ ଗାଉଁଲି କଥା
ରୂପାୟିତ କରି ଟେକିଲ ମଥା ।୭।
ଶୁଣି ଶୁଣାଇଲେ କଲେ ଆବୃତ୍ତି
ଆଉ ଅଛି କେତେ ଅବା ଏତିକି ।୮।
ଲେଖୁ ଲେଖୁ ହେଲ କବି ଟପି ଗଲ ଆମକୁ
ଏବେ ଝୁରି ହେଉ ତୁମ ପାରିଲାର ପଣକୁ ।୯।
ବଂଧୁ, ନାହିଁ ମୋ ହାତରେ ଆଜି ଚକ୍ ଖଡି ଡଷ୍ଟର
ଗାଣିତିକ ସୂତ୍ରାବଳୀ ସବୁତ ଅସାର ।୧୦।
ଯାଉଛି ପାଶୋର ସମୟର ନିଷା ଘାତେ
ଫେରିବନି ସେ ପ୍ରତିଭା ଯାହା ଥିଲା ହାତେ ।୧୧।
କାଁ ଭାଁ ମନେ ରଖିଥିବେ ଅବା କେତେ
ପଦ ପଦବୀରେ ଥାଇ ଛାତ୍ର ଛାତ୍ରୀ ଯେତେ ।୧୨।
ଶିକ୍ଷା କର୍ମଶାଳା ଥିଲା ସାଧନା ଅଙ୍ଗନ
ନାହଁ ସେ ପାଠ ଖସଡା ନାହାଁନ୍ତି ସେ ଛାତ୍ରଛାତ୍ରୀ ଗଣ ।୧୩।
ଭାଳି ଭାଳି ଆମେ ଅବସାଦ ନାହିଁ କିଛି କରିବାକୁ ଆଉ
ଜୀବନ ସାୟାହ୍ନେ ଅତୀତର ସ୍ମୃତି ଜାଗରିତ ଥାଉ ।୧୪।
ତୁମେ କାଳ ଜୟୀ ଚିର ରହିବ ଅମର
ଭାରତୀ ଭଣ୍ଡାରେ ଥିବା ଯାଏ କୃତୀ ତୁମର ।୧୫। ❑❑❑

ଉଷ୍ଣୁମା, ମାହାଙ୍ଗା, କଟକ



# ସାରସ୍ୱତ ଓ ଶୈକ୍ଷିକ ସାଧନାପଥରେ ଯୁଗଯାତ୍ରୀ ନନ୍ଦ କିଶୋର

**ପ୍ରଫେସର ଜଗନ୍ନାଥ ମହାନ୍ତି**

ସୁଷମାମୟୀ ପ୍ରକୃତି କୋଳରେ ଓ ସାଧନାପୀଠ କୁସୁପୁର ଗ୍ରାମରେ, ପୁଣି ଏକ ଦରିଦ୍ର ପରିବାରରେ ଜନ୍ମ ଗ୍ରହଣ କରି ନିଜର ସାଧନା ବଳରେ ନିଜକୁ ଉଚ୍ଚକୋଟୀକୁ ଉନ୍ନୀତ କରିଥିଲେ ନନ୍ଦ କିଶୋର। ସେ ଥିଲେ ଅନେକଙ୍କର "ସାର" ଓ ଆମର ପ୍ରିୟ ଶିଶୁ ସାହିତ୍ୟ ସ୍ରଷ୍ଟା। ଜୀବନ ସଂଗ୍ରାଂମରେ ସବୁ ଦୁଃଖ କଷ୍ଟ ଓ ଅଭାବ ଅସୁବିଧା ଅନୁଭବ କରି ସୁଦ୍ଧା ସେ ସବୁକୁ ବାଧାବନ୍ଧନ ପରିବର୍ତ୍ତେ ଆହ୍ୱାନ ବୋଲି ମନେ କରିଥିଲେ ଏବଂ ଅସୀମ ଧୈର୍ଯ୍ୟ ଓ ଅଧ୍ୟବସାୟ ଯୋଗୁଁ ଅପୂର୍ବ ସଫଳତା ଲାଭ କରିଥିଲେ। ମଣିଷ ସବୁ ପ୍ରତିବନ୍ଧକକୁ ଅତିକ୍ରମ କରି କିପରି ସାଫଲ୍ୟ ଅର୍ଜନ କରିପାରେ, ତାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ କବି ନନ୍ଦ କିଶୋର। ପ୍ରାଥମିକ ଶିକ୍ଷକ ଜୀବନରୁ ସେ ଏହି ସିଦ୍ଧି ବଳରେ ହାଇସ୍କୁଲର ଶିକ୍ଷକ ହୋଇଥିଲେ ଏବଂ ଶିଶୁ କବିତା ଲେଖକ ଜୀବନରୁ ସେ ପାଠ୍ୟପୁସ୍ତକ, ନାଟକ, ଏକାଙ୍କିକା ଆଦି ବହୁ କ୍ଷେତ୍ରରେ ପ୍ରସିଦ୍ଧି ଅର୍ଜନ କରିଥିଲେ। ତାଙ୍କରେ ଲେଖାଗୁଡିକ ଥିଲା କାଳଜୟୀ ଏବଂ ସେଥିପାଇଁ ସେ ବହୁ ସାରସ୍ୱତ ପୁରସ୍କାର ଓ ସମ୍ବର୍ଦ୍ଧନୀ ଲାଭ କରିଥିଲେ। ସର୍ବୋପରି, ଅଗଣିତ ଛାତ୍ରଛାତ୍ରୀଙ୍କ ଠାରୁ ସେ ଯେଉଁ ଭକ୍ତି ଭରା ଓ ସ୍ନେହସିକ୍ତ ସମ୍ମାନ ଲାଭ କରନ୍ତି, ତାହା ତାଙ୍କୁ ପରମ ଆନନ୍ଦ ପ୍ରଦାନ କରିଥିଲା।

ନନ୍ଦକିଶୋରଙ୍କ କବିତା, ବିଶେଷତଃ ଗୀତି କବିତା ରଚନାରେ ଥିଲେ ସିଦ୍ଧହସ୍ତ, ସରଳ ତରଳ ଭାଷା, ସାବଲୀଳ ଶୈଳୀ ସହିତ ମନଛୁଆଁ ଭାବରାଶି ମିଶି ରୂପାୟିତ ହୋଇଥିଲା ତାଙ୍କର ତ୍ରିବେଣୀଧାରା। ତାଙ୍କର କବିତାବଳୀ ଯେମିତି ରସସିକ୍ତ, ସେମିତି ପାଣବନ୍ତ। ପ୍ରାଥମିକ ଛାତ୍ରଛାତ୍ରୀଙ୍କ ପାଇଁ ତାଙ୍କର କବିତା ଆମଘର ଏକ ଅମର ସୃଷ୍ଟି। ତାର ଗୋଟିଏ ପଦ ହେଲା –

"ଏଇଟି ଆମର ଫୁଲ ବଗିଚା
ତଳେ ପଡିଚି କି ଘାସ ଗାଲିଚା
ଉଡି ଉଡି ଆସେ ପରଜାପତି
ତରକା ଅତି / ଏଇଠି ବୁଲେ
ଫୁଲରେ ଝୁଲେ / କଳସୀ ଆଣି
ଫୁଲଗଛ ମୂଳେ ଦିଏ ମୁଁ ପାଣି ।"

ସେମିତି ତାଙ୍କର ମନେ ପଡେ ଗାଁ'ଟିର ଶୋଭା, ଗୋଟି ଗୋଟି କରି ସେସବୁ ଭାଳନ୍ତି। ମନରେ ଆନନ୍ଦ ଭରି ଉଠେ। ସେ ଗାଆନ୍ତି

''ମନେ ପଡ଼େ ତାର ଟିକ ଗଡ଼ିଆ

କଅଁଳ କଳମ ନଟି

ଟିକିଏ ଦୂରରେ ନୀଳ ପାହାଡ

ପାହାଡ଼ ଝୁମୁକି ଝାଟି

ନାଳ ସେପାରି ଧାନ କିଆରୀ

ଏପାରିର ତାଳ ବଣ

ଗାଁ ତୋଟା ତଳ କିଆ ଗୋହିରୀ

ଢୁକୁଢୁକୁ ପଣ ପଣ''

''ମନେ ପଡିଯାଏ ମୋର'' କବିତାଟିରେ ଗାଁ ମାଟିର ଦୃଶ୍ୟ କେତେ ସୁନ୍ଦର, କେତେ ଆପଣାର। ପାଠ ସାଥିରେ କାମ କରିବାର ଅଭ୍ୟାସ ଓ ଆଗ୍ରହ ପିଲା ଦିନୁ ବଢାଇ ପାରିଲେ ଆଗକୁ ସେମାନେ ବେକାର ହୋଇ ବସନ୍ତେ ନାହିଁ। ଯେ କୌଣସି ବୃତ୍ତି ଓ ଧନ୍ଦାରେ ପ୍ରବୃତ୍ତ ହୁଅନ୍ତେ, ଆତ୍ମ ନିଯୁକ୍ତି ସହଜ ସାଧ୍ୟ ହୁଅନ୍ତା। ପାଠ ପଢି ସେମାନେ ଘରର, ସମାଜର ବୋଝ ହୋଇ ରହନ୍ତେ ନାହିଁ। ଏ ସବୁକୁ ଲକ୍ଷ୍ୟ କରି ନନ୍ଦ କିଶୋର ଗାଇଛନ୍ତି –

''ପାଠବେଳେ ପାଠ ପଢେ ମୁଁ ଘରେ

ଦରକାର ବେଳେ ଖଟେ ବିଲରେ

ବାପା ପଚାରନ୍ତି 'କୁନା'

ପଢ଼ାପଢ଼ି ଛାଡି ବିଲରେ ଖଟୁଚୁ

ପାଠ ମାରା ହେବ ସିନା।''

ପାଠପଢୁଆ ପିଲା ତା'ର ଉତ୍ତର ଦିଏ –

''ମାରା ହେବା ଚିଜ ନୁହେଁ ସେ ବାପା,

ଭିତରେ ବାହାରେ ସବୁତ ସଫା

ଜ୍ଞାନର ଭଣ୍ଡାର ସେଇ

ଥରେ ପଢି ଦେଲେ ସବୁ ପାଠଯାକ

ମନେ ରଖିଦିଏ ମୁହିଁ।''

ଓଡିଶା ସାହିତ୍ୟ ଏକାଡେମୀ ପୁରସ୍କୃତ ପୁସ୍ତକ ''ମୋତେ ଯେତେବେଳେ ଦଶବରଷ'' କବିଙ୍କର ସେମିତି କବିକରେ ଶ୍ରମ ମର୍ଯ୍ୟାସା ଜ୍ଞାନ ସୁସ୍ପଷ୍ଟ

"ମତେ ଯେତେବେଳେ ଦଶବରଷ"
ବାପାଙ୍କ ସାଙ୍ଗରେ କରେ ମୁଁ ଚାଷ
ବେଳେ ବେଳେ ଧରେ ହଳ
ହଳ ଛାଡି ଦିଏ ବାପାଙ୍କ ହାତକୁ
ହଟିଗଲା ବେଳେ ବଳ ।

ଆମେ ଗଛଲତା ଆମର ବଂଧୁ, ସେମାନେ ଆମର ଉପକାରୀ ବନ୍ଧୁ । ପିଲାମାନେ ଭାବନ୍ତି, ସେ ସବୁର ଜୀବନ ନାହିଁ, ଚଳପ୍ରଚଳ କରିପାରନ୍ତି ନାହିଁ, ସେମାନେ କ'ଣ କରିପାରିବେ ? କବି ସେମାନଙ୍କୁ ବୁଝାଇ କହୁଛନ୍ତି –

"ଗଛ ବଢୁଛି
ଛୋଟିଆ ଗଛଟି ବଡ ହେଉଛି
ଡାଳ କାଟି ଦେଲେ କ୍ଷୀର ଝରୁଛି
କ୍ଷୀର ନୁହେଁ ତାର ରକତ ସେଇ
କେମିତି କହୁଚୁ ଜୀବନ ନାହିଁ ?"

ଏହିପରି ପିଲାଙ୍କ ଭିତରେ 'ଗଛ ସଜୀବ, ଆମର ସାଥୀ, ଆମର ବଂଧୁ' ବୁଝାଇବାରେ କବି ସଫଳ ହୋଇଛନ୍ତି । ତାଙ୍କର ଛଡା ଯାଇଛି ପୂତ ପବିତ୍ର ଆତ୍ମା ଯେମିତି କୁସୁମର ସୁଷମା ଓ ମଧୁର ସୁବାସ ନେଇ ଆତୁର ହୋଇ ପଡିଛି !

ଭାବାବେଗ ଆହୁରି ଚମତ୍କାର ହୋଇଛି ।

ସାରସ୍ୱତ ସାଧକ ଓ ଜାତିପ୍ରେମୀ କବି ଯଥାର୍ଥରେ ଶିଶୁ କିଶୋରମାନଙ୍କୁ ସୁପାଠ୍ୟ ଓ ସାରଗର୍ଭକ ଶିକ୍ଷାଦାନ ସହିତ କବିତାମାନଙ୍କୁ ସୁପାଠ୍ୟ ଓ ସାରଗର୍ଭକ ଶିକ୍ଷାଦାନ ସହିତ କବିତାର ସରଳ ତରଳ ଓ ସରସ କବିତା ମାଧ୍ୟମରେ ସମସ୍ତଙ୍କର ମନୋରଞ୍ଜନ କରିଛନ୍ତି । ଆନନ୍ଦ ମଧ୍ୟରେ ଆଲୋକ ଦେଇ କବି ନନ୍ଦ କିଶୋର ଜଣେ ସାର୍ଥକ ଓ ସମର୍ଥ ଶିକ୍ଷକ ଓ ସାରସ୍ୱତ ସାଧକ ଭାବରେ ନିଜକୁ ସବୁଦିନ ପାଇଁ ପ୍ରତିଷ୍ଠା କରିଛନ୍ତି । ❑❑❑

୨୯୩୫, ଗୌରୀନଗର, ଭୁବନେଶ୍ୱର-୨



# ଷୋଳ କଳାର ନାୟକ ନନ୍ଦ କିଶୋର

**ନଦୀୟା ବିହାରୀ ମହାନ୍ତି**

ଆକାଶବାଣୀରୁ ପ୍ରସାରିତ ୪ ସାମଲଙ୍କର ଭଜନ ଓ ଜଣାଣ ଶୁଣିଲେ ଯେ କେହି ଅନୁଭବ କରିବ, ସେ ଥିଲେ ଶ୍ରୀ ଜଗନ୍ନାଥଙ୍କର ପରମ ଭକ୍ତ ଓ ଜଣେ ଖାଣ୍ଟି ଓଡିଆ,

ଶ୍ରୀ ଜଗନ୍ନାଥ ହେଉଛନ୍ତି ଷୋଳ କଳାର ଅଧିକାରୀ ସେଥିପାଇଁ ଶ୍ରୀ ଜଗନ୍ନାଥ ଚରିତାମୃତରେ ପୁରାତନ କବି ବିପ୍ର ଦିବାକର ଦାସ ଗାଇଛନ୍ତି –

"ଜଗନ୍ନାଥ ଯେ ଷୋଳ କଳା, ତହୁଁ କଳା ଏ ନନ୍ଦ ବଳା,
କଳାକୁ ଷୋଳ କଳା କରି ନିତ୍ୟ ବିହରେ ନରହରି,"

ନନ୍ଦ କିଶୋର ନାମଟି ଯେହେତୁ ନନ୍ଦ ସୁତ, ନନ୍ଦ କଳା ବୁଝାଏ, ମନେ ହୁଏ ନନ୍ଦ କିଶୋର ନନ୍ଦ ସୁତଙ୍କ ଭଳି ଏକ କଳା – ସାହିତ୍ୟକୁ ଷୋଳ କଳା କରି ତାଙ୍କର ସୃଷ୍ଟି ସମ୍ଭାରକୁ ରସାଣିତ ଓ ଲୋକପ୍ରିୟ କରିବାରେ ଧୁରନ୍ଧର ଥିଲେ।

ସାହିତ୍ୟ କ୍ଷେତ୍ରରେ ସେ ଥିଲେ, ଶିଶୁ ସାହିତ୍ୟିକ, ନାଟ୍ୟକାର, ଗାଳ୍ପିକ, ଗୀତିନାଟ୍ୟ ରଚିୟୀତା, ଅନୁବାଦକ, ଜୀବନୀ ଲେଖକ, ନୃତ୍ୟନାଟିକା ରଚୟୀତା, ଗୀତିକାର, ରୂପକ ସ୍ରଷ୍ଟା।

ସେ ସବୁକୁ ରୂପାୟିତ କରିବା ପାଇଁ ତାଙ୍କ ନିକଟରେ ଥିଲା ଅଭିନୟ କଳା, ସେ ପୁଣି ଥିଲେ ଆଶୁ କବି, ଚିତ୍ରକର, ପାଲା ଲେଖକ ଓ ଗାୟକ ଥିଲେ ପୁଣି ସୁବକ୍ତା ଏବଂ ମଞ୍ଚ ଓ ନାଟ୍ୟ ନିର୍ଦ୍ଦେଶକ।

ଏହା ଏକ କପୋଳ କଳ୍ପିତ ଉଦାହରଣ ନୁହେଁ, "ସ୍ମୃତିଅର୍ଘ୍ୟ" ଗ୍ରନ୍ଥର ପୃଷ୍ଠା ଓଲଟାଇ ଗଲେ ତାଙ୍କ ସଂପର୍କ ତାଙ୍କର ବନ୍ଧୁ ସହଯୋଗୀ ଠାରୁ ଛାତ୍ରଛାତ୍ରୀ ମାନେ ଯାହା ଉଲ୍ଲେଖ କରିଛନ୍ତି, ତହିଁରୁ ଏହାର ଜୀବନ୍ତ ପ୍ରମାଣ ମାନ ପାଇବେ।

ସେ ଦୃଷ୍ଟି ସେ ମୋ ବିଚାରରେ ଥିଲେ–ଷୋଳ କଳାର ନାୟକ। ବୋଧ ହୁଏ ଏହା ଥିଲା ତାଙ୍କ ପ୍ରତି ଶ୍ରୀ ଜଗନ୍ନାଥଙ୍କର ଆଶୀର୍ବାଦ। ମାତ୍ର ଆମେ କେବଳ ତାଙ୍କୁ ଶିଶୁ ସାହିତ୍ୟିକର ମର୍ଯ୍ୟାଦା ପ୍ରଦାନ କରି ମାତ୍ର ଗୋଟିଏ ପ୍ରତିଭାର ଆକଳନ କରିଥାଏ।

ସେ ଦୃଷ୍ଟିରୁ ତାଙ୍କର ଅବର୍ତ୍ତମାନରେ ସାହିତ୍ୟ ସୃଷ୍ଟି କ୍ଷେତ୍ରରେ ଅନ୍ୟ ଯେଉଁ ବିଭାଗରେ ଲେଖନୀ ଚାଳନା କରିଛନ୍ତି – ସେ ଗୁଡିକର ପୁଙ୍ଖାନୁପୁଙ୍ଖ ଆଲୋଚନା ଆବଶ୍ୟକ।

ସୁଖର କଥା 'ସ୍ମୃତି–ଅର୍ଘ୍ୟ' ପୁସ୍ତକରେ ତାଙ୍କ ଲିଖିତ, ପ୍ରକାଶିତ ଓ ଅପ୍ରକାଶିତ

ପୁସ୍ତକମାନଙ୍କର ଏକ ଦୀର୍ଘ ତାଲିକା ପ୍ରକାଶ ପାଇଛି। ସେ ସବୁକୁ ଏକତ୍ରୀତ କରାଯାଇ ଗ୍ରନ୍ଥାବଳୀଟିଏ ପ୍ରକାଶ ଲାଗି ନନ୍ଦ କିଶୋର ସାମଲ ସ୍ମୃତିନ୍ୟାସ ପକ୍ଷରୁ ଉଦ୍ୟମ କରାଯାଇ ପାରିଲେ ଗବେଷକମାନଙ୍କ ଲାଗି ଏହା ଗବେଷଣା ପାଇଁ ସୁଗମ ହୋଇ ପାରନ୍ତା।

ଏତଦ୍ ବ୍ୟତୀତ ତାଙ୍କର ବ୍ୟକ୍ତିଗତ ସଂପର୍କରେ ବହୁକ୍ଷେତ୍ରରେ ଆସିଛନ୍ତି - ସେମାନଙ୍କ ଠାରୁ ତାଙ୍କର ବିଭିନ୍ନ ପ୍ରତିଭା ସଂପର୍କରେ ସାକ୍ଷାତ୍‌କାର ମାନ ସଂଗ୍ରହ କରାଯାଇ ଏକ ଗ୍ରନ୍ଥ ରଚନା କରାଗଲେ ଏହି ମହାନ୍ ସାହିତ୍ୟ ସାଧକ, ଚିତ୍ରଶିଳ୍ପୀ, କଳାକାର, ଗୀତିକାର, ନାଟ୍ୟକାରଙ୍କ ସଂପର୍କରେ ବହୁ ତଥ୍ୟ ସଂବଳୀତ ଘଟଣାବଳୀ ଲୋକ ଲୋଚନକୁ ଆସିବାର ସୁଯୋଗ ମିଳନ୍ତା।

ଆମ ରାଜ୍ୟରେ ପ୍ରତିଭାବାନ୍ ବ୍ୟକ୍ତିମାନଙ୍କ ଜୀବନ୍ତ ଅବସ୍ଥାରେ ପ୍ରତିଭା ପୂଜା ଅବସରରେ କେବଳ ସେମାନଙ୍କୁ ମାନପତ୍ର ଓ ଲିପଟ୍ଟୌକନ ପ୍ରଦାନ କରି ସନ୍ତୁଷ୍ଟ ରହୁ।

ତାଙ୍କର ଜୀବିତା ଅବସ୍ଥାରେ ଏହି ପ୍ରତିଭାଦୀପ୍ତ ବ୍ୟକ୍ତିମାନଙ୍କର କୃତିର ଆଲୋଚନା କରି ସେମାନଙ୍କର ଅବଦାନକୁ ଲିପିବଦ୍ଧ କରି ସେମାନଙ୍କ ମଧରେ ଅଧିକ ଉତ୍ସାହ ପ୍ରେରଣା ଭରି ଦେବାର ପ୍ରଚେଷ୍ଟା ପ୍ରାୟତଃ କ୍ୱଚିତ୍ ଦେଖାଯାଏ।

ସେଥିପାଇଁ ଆମ ରାଜ୍ୟରେ ଲୋକମାନଙ୍କ ଘରେ ଚୋର ପଶି ମାଲମତା ଧରି ଖସି ଗଲା ପରେ ଆମର ନିଦ ଭାଙ୍ଗେ ବୋଲି ଏକ ପ୍ରବାଦ ରହିଛି।

ସ୍ପଷ୍ଟ ଭାବରେ କହିଲେ ଆଳସ୍ୟ ଓ ଅସହିଷ୍ଣୁତା ଆମର ଏକ ଜାତୀୟ ବ୍ୟାଧି।

ସୁଖର କଥା ୰ ସାମଲଙ୍କ ଜୀବଦ୍ଦଶାରେ ଡକ୍ଟର ଜ୍ୟୋତିର୍ମୟୀ ରାଜଗୁରୁ "ଓଡିଆ ଶିଶୁ ସାହିତ୍ୟକୁ ନନ୍ଦ କିଶୋର ସାମଲଙ୍କ ଅବଦାନ" ସଂପର୍କରେ ଗବେଷଣା ନିବନ୍ଧ ପ୍ରସ୍ତୁତ କରିବା ପାଇଁ ସକ୍ଷମ ହୋଇଛନ୍ତି।

"ସ୍ମୃତିଅର୍ଘ୍ୟ" ପୁସ୍ତକ ସେ ଯେଉଁ ଅନୁଷ୍ଠାନମାନଙ୍କରେ ଯୋଗଦାନ କରି ସଂବର୍ଦ୍ଧିତ ହୋଇଛନ୍ତି ଏବଂ ଯେଉଁ କର୍ମଶାଳା, ସଭା, ସମିତି, ସମ୍ମିଳନୀରେ ବକ୍ତବ୍ୟ ପ୍ରଦାନ କରିଛନ୍ତି- ସେଗୁଡିକୁ ସଂଗ୍ରହ କରି ଏକ ସଂକଳନ ପ୍ରକାଶ ପାଇଲେ - ସାହିତ୍ୟ ସୃଷ୍ଟି କ୍ଷେତ୍ରରେ ତାଙ୍କର ଦୃଷ୍ଟିକୋଣ କ'ଣ ଥିବାରୁ ତାଙ୍କର ସାହିତ୍ୟ ସୃଷ୍ଟି, ଏତେ ଜୀବନ୍ତ ହୋଇପାରିଛି ତାହାର ଏକ ସ୍ପଷ୍ଟ ଚିତ୍ର ମିଳିବା ସହ, ଆଗାମୀ ପୀଢିର ସାହିତ୍ୟ ସ୍ରଷ୍ଟାମାନଙ୍କୁ ଦିଗ୍‌ଦର୍ଶନ ଦେଇ ପାରନ୍ତା।

ଏ ଜାତି ଯଦି ପ୍ରକୃତରେ ତାଙ୍କୁ ଓ ତାଙ୍କର କୃତିଗୁଡିକୁ ସଂରକ୍ଷଣ କରି ରଖିବାକୁ ଆଗ୍ରହୀ, ତେବେ କେବଳ ବର୍ଷକୁ ବର୍ଷ ଶ୍ରଦ୍ଧା ସଭା ଓ ସ୍ମରଣିକା ମାଧ୍ୟମରେ ନୁହେଁ- ତାଙ୍କ୍ ଶିଶୁ ସାହିତ୍ୟ ବିଶେଷ କରି କବିତା ଗୁଡିକ ଯେପରି ବହୁଳ ଭାବରେ ପ୍ରସାରିତ ହୋଇ ଶିଶୁମାନଙ୍କ ତୁଣ୍ଡରେ ଆବୃତ୍ତ ହୋଇପାରିବା କିମ୍ବା ତାଙ୍କର ଗୀତିନାଟ୍ୟ, ନାଟକ, ନୃତ୍ୟ ନାଟିକା, ଗୀତ ପୁସ୍ତକଗୁଡିକ କେବଳ ପୁସ୍ତକାଗାରରେ ସାଇତା ନ ହୋଇ, ବିଭିନ୍ନ ସ୍ଥାନରେ

ମଞ୍ଚସ୍ଥ ହେବାର ଉଦ୍ୟମ କରାଯିବା ଆବଶ୍ୟକ।

ଯେପରି ବିରୂପା ଭୂଇଁର ନନ୍ଦ କିଶୋର ବଳ, ବୈଷ୍ଣବ ପାଣିଙ୍କ ରଚନା ବଳୀ ଆଜି ଜନ ମାନସରେ ସ୍ଥାନ ପାଇ ତାଙ୍କୁ ଅମର କରି ଦେଇଛି। ଠିକ୍ ସେହିଭଳି ଖୋଲ କଳାର ନାୟକ ସ୍ୱର୍ଗତ ନନ୍ଦ କିଶୋର ସାମଲ ଯେ ତାଙ୍କର ଲେଖା ମାଧ୍ୟମରେ ଅମର ହୋଇ ଜନମାନସରେ ରହିଯାଇ ପାରନ୍ତେ ଏଥିରେ ସନ୍ଦେହର ଅବକାଶ ନାହିଁ।

ଆଜିର ଏହି ପୁଣ୍ୟ ମୃତ୍ୟୁ ବାର୍ଷିକୀ ପାଳନ ଅବସରରେ ତାଙ୍କର ଅମର ଆତ୍ମା ପ୍ରତି ଗଭୀର ଶ୍ରଦ୍ଧା ନିବେଦନ ସହ ଭକ୍ତି ପୂତ ପ୍ରଣାମ ଜଣାଉଛି। ❑❑❑

ତଳତେଲଙ୍ଗା ବଜାର, କଟକ - ୯

# ଶବ୍ଦ ପ୍ରଣାମ

**ପ୍ରଫୁଲ୍ଲ କୁମାର ସାହୁ(ବୁଲୁ)**

ଜଣେ ରାଜା ଥିଲେ
ମୁକୁଟ ବିହୀନ,
ଯାହାଙ୍କର ଥିଲା ଶବ୍ଦର ସାମ୍ରାଜ୍ୟ
ଶବ୍ଦ, ପଦ, ଛନ୍ଦ ଏବଂ ନାଟକର
ଚରିତ୍ରଗଣ ସାଜୁଥିଲେ ରାଜ ପାରିଷଦ
ଦିନ, ପ୍ରତିଦିନ।

ପାଞ୍ଚ ଫୁଟ ତିନି ଇଞ୍ଚ ଉଚ୍ଚତାର ମଣିଷ
ସାଧା ବେଶ ଭୂଷା, ହସହସ ମୁହଁ
ହସି, ହସି କଥା ହେଉଥିଲେ
ମଣିଷ ଓ ପ୍ରକୃତି ସାଥିରେ ॥

କବିତାର ଲତା- ଲତେଇ ଦେଉଥିଲେ
ମଣିଷର ଛାତି ପଞ୍ଜରାରେ
ନାଟକର ଚରିତ୍ରଗଣଙ୍କୁ
ଓହ୍ଲେଇ ଦେଉଥିଲେ
ଦର୍ଶକ ସାମ୍ନାରେ... ଖୋଲା ମଞ୍ଚପରେ ॥

ଖୋଲା ମେଲା ଜୀବନ ଯାପନ
କବିତା ହିଁ ଥିଲା ନିଜସ୍ୱ ଭୂଷଣ
ଶିଶୁଙ୍କର ମନଲୋଭା ପଦ ଯୋଡ଼ିବାରେ
ସିଦ୍ଧତା ଲଭିଥିଲେ ଶବ୍ଦର ସମ୍ରାଟ ॥

ଯାହାଙ୍କର କଥା କହୁଥିଲି ଏତେ କ୍ଷଣ
ସିଏ ଏ ମାଟିର ଅମର ସନ୍ତାନ
କବି ନନ୍ଦ କିଶୋର ସାମଲ
ତାଙ୍କୁ ଆଜି ତାଙ୍କ ଶ୍ରାଦ୍ଧ ବାର୍ଷିକୀରେ
ଜଣାଉଛି ଭକ୍ତିପୂର୍ଣ୍ଣ
ଶବ୍ଦର ପ୍ରଣାମ ॥

❑❑❑

କୁସୁପୁର, କଟକ



# ସ୍ମୃତିରେ ସ୍ମୃତିର ନନ୍ଦ କିଶୋର

ବୀରେନ୍ଦ୍ର ମହାନ୍ତି

୨୦୦୨ ମସିହା ଡିସେମ୍ବର ୨୫ ତାରିଖ । ବଡଦିନ । ପୁରୀ ଜିଲ୍ଲାପାଳଙ୍କ ସମ୍ମେଳନ କକ୍ଷରେ ଶ୍ରୀକ୍ଷେତ୍ର ଶିଶୁ ସାହିତ୍ୟ ସଂସଦର ବାର୍ଷିକ ଉତ୍ସବ ଉଦ୍‌ଘାଟନ ହୋଇସାରି ଥାଏ । ପାରମ୍ପରିକ ରୀତିରେ ମୁଁ ସ୍ୱାଗତ ସମ୍ବର୍ଦ୍ଧନା ଓ ଅତିଥି ପରିଚୟ ଦେବାକୁ ମାଇକ୍ ପାଖରେ ଛିଡା ହୋଇଥାଏ । ସାମନାରେ ଓଡିଶାର ବିଭିନ୍ନ ପ୍ରାନ୍ତରୁ ଆସିଥିବା ବରିଷ୍ଠ ଓ ଯୁବ ପୀଢିର ବିଶିଷ୍ଟ ଶିଶୁ ସାହିତ୍ୟିକ ଗଣ ଓ ବିଭିନ୍ନ ସ୍କୁଲରୁ ଆସିଥିବା କୁନିକୁନି ପିଲାମାନେ ବସିଥାନ୍ତି । ମୋ'ଛାତି କୁଣ୍ଢେମୋଟ ହୋଇ ଯାଉଥାଏ । ଆଖି ଛଳ ଛଳ ହୋଇ ଆସୁଥାଏ । ଶିଶୁ ସାହିତ୍ୟର ଏତେବଡ ସଭା । ପୁଣି ସେହି ସଭାରେ ଓଡିଆ ଶିଶୁ ସାହିତ୍ୟର ବରିଷ୍ଠ ସାହିତ୍ୟିକ ନନ୍ଦ କିଶୋର ସାମଲ ଶ୍ରେଷ୍ଠ ଶିଶୁ ସାହିତ୍ୟିକ ସମ୍ମାନ ପାଇବାକୁ ମନୋନୀତ ଓ ଉପସ୍ଥିତ ହୋଇଥାନ୍ତି । ବରିଷ୍ଠ ଶିଶୁ ସାହିତ୍ୟିକମାନଙ୍କ ମଧ୍ୟରେ ଜୟକୃଷ୍ଣ ସାହୁ, ରମେଶ ଚନ୍ଦ୍ର ଭଞ୍ଜ ନଦୀଆ ବିହାରୀ ମହାନ୍ତି, ହାଡିବନ୍ଧୁ ମିଶ୍ର, ଜଗନ୍ନାଥ ମହାନ୍ତି, ମନୀନ୍ଦ୍ର ମହାନ୍ତି, ଲକ୍ଷ୍ମୀକାନ୍ତ ଖୁଣ୍ଟିଆ, ରବିନ୍ଦ୍ର ବିଶ୍ୱାଳ, ଅରୁଣ ଚନ୍ଦ୍ର ମହାନ୍ତି, ବଙ୍କିମ ଚନ୍ଦ୍ର ନାୟକ, ଶରତ ନାୟକ, ରଘୁନନ୍ଦନ ମହାପାତ୍ର, ଗୋଲକ ବିହାରୀ ବିଶୋଇ ପ୍ରଭୃତି ଅନେକ ଶିଶୁ ସାହିତ୍ୟିକ ଉପସ୍ଥିତ ଥାନ୍ତି । ଅତିଥି ଭାବରେ ବର୍ତ୍ତମାନର ବାଚସ୍ପତି ମହେଶ୍ୱର ମହାନ୍ତି, ପୁରୀର ତତ୍‌କାଳୀନ ଜିଲ୍ଲାପାଳ ତଥା ବର୍ତ୍ତମାନ ଓଡିଶା ସରକାରଙ୍କର ସୂଚନା ଓ ଲୋକସଂପର୍କ ବିଭାଗର ପ୍ରମୁଖ ଶାସନ ସଚିବ ଶ୍ରୀଯୁକ୍ତ ଦିଗମ୍ବର ମହନ୍ତି ଆଇ.ଏ.ଏସ୍, ତତ୍‌କାଳୀନ ଶିକ୍ଷାମନ୍ତ୍ରୀ ସୁରେନ୍ଦ୍ର ନାୟକ ଓ ମୁଖ୍ୟ ଅତିଥି ରୂପେ ପୁରୀର ସାଂସଦ ତଥା ତତ୍‌କାଳୀନ କେନ୍ଦ୍ର ଇସ୍ପାତ ମନ୍ତ୍ରୀ ଶ୍ରୀଯୁକ୍ତ ବ୍ରଜ କିଶୋର ତ୍ରିପାଠୀ ଆମ ସଭାରେ ଯୋଗ ଦେଇଥାନ୍ତି । ଅନ୍ୟମାନଙ୍କ ମଧ୍ୟରେ ପୁରୀର ତତ୍‌କାଳୀନ ନଗରପାଳ ଶ୍ରୀ ସୁରେନ୍ଦ୍ର ନାଥ ଦାଶ ଓ ମୁଖ୍ୟବକ୍ତା ଭାବେ ଓଡିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦର ପ୍ରତିଷ୍ଠାତା ଡଃ ମନୀନ୍ଦ୍ର ମହାନ୍ତି ଓ ଡଃ ପ୍ରତିଭା ମହାରଥୀ ଯଥାକ୍ରମେ ସମ୍ମାନୀତ ଅତିଥି ରୂପେ ଯୋଗ ଦେଇଥାନ୍ତି । ସମ୍ମେଳନ କକ୍ଷରେ ଉପସ୍ଥିତ ଜ୍ଞାନୀ ଗୁଣିଙ୍କ ମୃଦୁ ଗୁଞ୍ଜରଣ ମଧ୍ୟରେ ମୁଁ ଆରମ୍ଭ କଲି ସ୍ୱାଗତ ସମ୍ବର୍ଦ୍ଧନା ପର୍ବ । ପ୍ରାରମ୍ଭିକ ସୂଚନା ପ୍ରଦାନ କରି ମୁଁ ସଭାର ଆଭିମୁଖ୍ୟ ପ୍ରଦାନ କରି ସାରିବା ପରେ ସମ୍ବର୍ଦ୍ଧିତ ବ୍ୟକ୍ତିତ୍ୱ ମାନଙ୍କ ପରିଚୟ ପ୍ରଦାନ କରିବାକୁ ଯାଇ ସର୍ବପ୍ରଥମେ ଗୀତଟିଏ ବୋଲିଥିଲି ।

''ଏଇଟି ଆମର ରୋଷେଇ ଘର/ ଏ ଘର ଭିତର ସଫା ସୁତର
ଏଇ ଘରେ ମା ପରିବା କାଟେ/ବେଶର ବାଟେ ।
ଯାଇ ରଗଡେ, ଶାଗ ଖରଡେ/ଗଢ଼ଇ ପିଠା
ଆରିଷା କାକରା, ଆହାକି ମିଠା ।''

ଏଇ କେଇପଦ ଗୀତକୁ ବୋଲିବାରେ ସଭାରେ ଉପସ୍ଥିତ ସମସ୍ତ ପିଲାମାନେ ତାଳିମାରି ଉଠିଲେ। ଅତିଥିମାନେ ଏକ ଲୟରେ ମୋ ଆଡେ ଚାହିଥାନ୍ତି। ମୁଁ କହିଲି ଏଇ ଗୀତର ନାମ କ'ଣ ? ପିଲାମାନେ ଏକ ସ୍ୱରରେ କହି ଉଠିଲେ – ''ଆମ ଘର''। ପୁଣି ମୁଁ କହିଲି ଏହାର ଲେଖକ କିଏ ? କିଏ କହିବ ହାତ ଟେକ ? ପିଲାଟିଏ ଛିଡା ହୋଇ କହିଲା – ଶ୍ରୀଯୁକ୍ତ ନନ୍ଦ କିଶୋର ସାମଲ। ମୁଁ ପୁଣି କୌତୁହଳ ସୃଷ୍ଟି କରି କହିଥିଲି – ତାଙ୍କୁ ଦେଖିଛ ? ପିଲାଟି କହିଲା ନା। ମୁଁ କହିଲି ଯାହାଙ୍କର ଏତେ ସୁନ୍ଦର କବିତା ପଢିଛ। ତାଙ୍କୁ ଦେଖିନ। ଆଜି ସେହି ମହାନ ସାଧକ ଓଡିଆ ଶିଶୁ ସାହିତ୍ୟ ଜଗତର ମଉଡମଣି ଶ୍ରୀଯୁକ୍ତ ନନ୍ଦ କିଶୋର ସାମଲ ଆଜି ଆମ ପାଖରେ ଉପସ୍ଥିତ। ଅନୁରୋଧ କରିଥିଲି। ସେହି ମହାନ ଶିଳ୍ପୀଙ୍କର ଶିଷ୍ୟ ହୋଇ ଗୁରୁଙ୍କୁ ଅନୁରୋଧ କରିଥିଲି ସଭା ମଧ୍ୟରେ ଛିଡା ହୋଇ ପରିଚୟ ଦେବା ପାଇଁ। ଗୁରୁଜୀ ପ୍ରଫୁଲ୍ଲିତ ମନରେ ଛିଡା ହୋଇ ହାତଯୋଡି ସମସ୍ତଙ୍କୁ କୃତଜ୍ଞତା ଜଣାଇଥିଲେ। ମୁଁ ଜାଣି ନଥିଲି ଯେ, ଖାଲି ପିଲାମାନେ କାହିଁକି ମଞ୍ଚରେ ଥିବା ବିଦ୍‌ଗଧ ପଣ୍ଡିତମାନେ ବି ଜାଣି ନଥିଲେ ସେହି ମହାନ କବିଙ୍କର ପରିଚୟ। କେନ୍ଦ୍ରମନ୍ତ୍ରୀ, ବାଚସ୍ପତି, ଶିକ୍ଷାମନ୍ତ୍ରୀ, ଜିଲ୍ଲାପାଳ ସମସ୍ତେ ନିଜ ନିଜ ବକ୍ତବ୍ୟ ରେ କହିଥିଲେ ଯେ, ସେମାନେ ଧନ୍ୟ ହୋଇଛନ୍ତି ''ଆମଘର''ର କବି ନନ୍ଦ କିଶୋରଙ୍କୁ ସାକ୍ଷାତ କରି। ସେତେବେଳେ ମୋ ଛାତିବି ଫୁଲି ଯାଇଥିଲା। ଆମ ସଂସଦର ସଦସ୍ୟ ମାନଙ୍କର ମନବି ଫୁଲି ଉଠିଥିଲା। ଆମେ ଧନ୍ୟ ହୋଇ ଯାଇଥିଲୁ। କବି ନନ୍ଦ କିଶୋରଙ୍କୁ ଶ୍ରୀକ୍ଷେତ୍ରରେ ପ୍ରଭୁ କାଳିଆଙ୍କ ଅପାର କରୁଣାରୁ ସମ୍ବର୍ଦ୍ଧନା ଦିଆଯାଇ ଥିବାରୁ ନନ୍ଦ କିଶୋର ନିଜର ବକ୍ତବ୍ୟ ପ୍ରଦାନ ବେଳେ କାନ୍ଦି ପକାଇଥିଲେ। କି ଅପୂର୍ବ ସୁଯୋଗ ଥିଲା ସେଦିନ। ଅଜସ୍ର ପ୍ରଶଂସା କରିଥିଲେ ଆମ ସଂସଦକୁ। ସାଥିରେ ଥାନ୍ତି ନିଜର ପରିବାର ବର୍ଗ। ସମସ୍ତେ ବସି ଏକାଠି ପଙ୍ଗତ କଲୁ। ପଙ୍ଗତ ସରିବା ପରେ ଗୁରୁଜୀ ମୋ ପାଖକୁ ଆସି ମୋ ପିଠି ଥାପୁଡେଇ କହିଲେ – ''ବୁଝିଲ ବୀରେନ୍ଦ୍ର ବାବୁ ! ଅମୃତ ଭୋଜନଟିଏ ଦେଲ।'' ମହାପ୍ରସାଦ ପରି ଲାଗିଲା। ଯାହା ହେଉ ମୁଁ ଶ୍ରୀକ୍ଷେତ୍ରରେ ପହଞ୍ଚି ପ୍ରଭୁ କାଳିଆ ସାଆଁନ୍ତଙ୍କ ଯାଗାରୁ ପ୍ରଶଂସା ପତ୍ରଟିଏ ପାଇଲି, ସେଇ ମୋର ଶ୍ରେଷ୍ଠ ପୁରସ୍କାର। ଏହାକୁ ସାଇତି ରଖିବି। ମୁଁ ହସି ହସି କହିଥିଲି ସାର୍ ଏ ସବୁ କାଳିଆର ଲୀଳା। ଆମେ ନିମିତ୍ତ ମାତ୍ର। ଗୁରୁଜୀ କହିଲେ – ''ଆଜି ପ୍ରଭୁଙ୍କର ବଢିଆ ଦର୍ଶନ ହେଲା, ବଢିଆ ଭୋଜନ ହେଲା, ବଢିଆ ସମ୍ମାନ ମିଳିଲା, ବଢିଆ ବନ୍ଧୁ ମିଳନ ହେଲା।''ଏହା ଠାରୁ ଆଉ ବଢିଆ କ'ଣ ହୋଇପାରେ ? ବଞ୍ଚିଥିଲେ ନିଶ୍ଚୟ ଆରବର୍ଷକୁ ଆପଣଙ୍କ ଶ୍ରୀକ୍ଷେତ୍ର ଶିଶୁ ସାହିତ୍ୟ ଉତ୍ସବକୁ ଆସିବି। ମୁଁ ହସି ହସି କହିଥିଲି ସବୁ ସେଇ କାଳିଆର ଇଚ୍ଛା। ପ୍ରକୃତରେ ସେଇଆ ହେଲା ତା'ର ପରବର୍ଷ ନିମନ୍ତ୍ରଣ ଦେଲା ବେଳକୁ ପ୍ରଭୁ କାଳିଆ ସାଆନ୍ତ କବିଙ୍କୁ ଶ୍ରୀକ୍ଷେତ୍ରକୁ ନେଇ ଆସିଥିଲେ।

ଶ୍ରୀକ୍ଷେତ୍ର ଶିଶୁ ସାହିତ୍ୟ ସଂସଦ କବି ନନ୍ଦ କିଶୋର ସାମଲଙ୍କ ଭଳି ଜଣେ ମହାନ ଶିଶୁ ସାହିତ୍ୟର ସାଧକଙ୍କୁ ସମ୍ମାନୀତ କରି ନିଜକୁ ଧନ୍ୟ ମନେ କଲା। ଆଜି ସେଇ ମହାନ କାଳଜୟୀ ସ୍ରଷ୍ଟାଙ୍କର ର ସ୍ମୃତି ଦିବସରେ ଆମ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଅଛୁ। ❑❑❑

ନୀଳଚକ୍ର ନଗର, ଅଠରନଳା, ପୁରୀ-୨

# ବାଟ ଭାଙ୍ଗି ଫେରିଯିବା ବେଳେ

ନିରଞ୍ଜନ ଜେନା

ଏମନ୍ତ ଭାଗ୍ୟ ନେଇ
ଆସିଥିଲ କବି–
ସେ ସମସ୍ତଙ୍କୁ ନିରେଖେଇ ପଢୁଥିଲେ
ଏବଂ ଅନେକଙ୍କୁ ଆଙ୍କୁଥିଲେ
ତାଙ୍କ ଗଳ୍ପ, ନାଟକ ଓ କବିତାରେ
ହେଲେ: ତାଙ୍କୁ ସଠିକ୍ ପଢ଼ିବାକୁ
ଡର ନଥିଲା ଆମର ।।

ଘର ଚାଳରୁ ଝିଟିପିଟି କହେ ଟିକ୍ ଟିକ୍
ସାମ୍ନା ଗଛରୁ ଅଜଣା ପକ୍ଷୀ କହେ, ଠିକ୍ ଠିକ୍
ପଞ୍ଜୁରୀର ମଇନା କହେ;
ଏତେ ନିଛକ କଥା ଲେଖିବାକୁ
ତମକୁ କିଏ ଦେଇଥିଲା ଦ୍ୱାହି ?
ଅନ୍ଧେଇସା କାଳ ସହିଲାନି ତମ
କଲମର ବହପ,
ହାତ ଧରି ଝିଙ୍କି ନେଲା ସେପାରି
ଯେଉଁଠୁ କେହି ଫେରିନି ଅଦ୍ୟପି ।।

ସାର ଆମର ଏତେ ବହି ଲେଖି ନଥିଲେ
ଏ ପୃଥିବୀ ତା ଅକ୍ଷ ରେ ଠିକ୍ ଘୁରିଥାନ୍ତା,
ପକ୍ଷୀ ଗୀତ ଗାଉଥାନ୍ତା,
ଫୁଲେଇ ଝରଣା ବହି ଯାଉଥାନ୍ତା ନଈକୁ
ଏବଂ ନଈ ସମୁଦ୍ରକୁ ... ।।

ଆକାଶ କେତେବେଳେ ଜହ୍ନ ଆଡ
କେତେବେଳେ ତାରାମୟ
ବିରୂପା ନଈ, ବହଡିଅ ପାହାଡ଼
ଖେଣ୍ଡା ନାଲିବର,
ନିଛାଟିଆ ପିଙ୍ଗୁଳେଇ ବନ୍ଧ
ଜହ୍ନ, ତାରାର ହସ, କାନ୍ଦ
ମେଘୁଆ ଆକାଶର ଚିତ୍ର

ଅବୁଝା ଶିଶୁର ଅଝଟ
ବଣ ପୋଡିଯିବାର ଦୃଶ୍ୟ,
ମନ ପୋଡି ଯିବାର ଦୁଃଖ,
ବନ୍ୟା, ମରୁଡ଼ି, ବାତ୍ୟାର କରାଳ ଛବି,
କେହି ନ ଆଙ୍କିଲେ ବି
ଅନ୍ତଃ ସଲିଳା କବିତାର ସ୍ରୋତ
ବହୁଥାନ୍ତା ପୂର୍ବବତ୍ ।।

କିଛି ଫରକ ପଡୁ ନଥାନ୍ତା ପୃଥିବୀର
ଗୀତା ଗାଉଥାନ୍ତା ପକ୍ଷୀ,
ଫୁଲେଇ ଝରଣା ବହି ଯାଉଥାନ୍ତା ନଈକୁ
ଏବଂ ନଈ ସମୁଦ୍ରକୁ... ।।

ଦୃଶ୍ୟମୟ ପୃଥିବୀକୁ ଦେଖି
ନିବୁଜ୍ ଶବ୍ଦ ଘରେ ବସି
ବିହ୍ୱଳିତ ନନ୍ଦ ସାର୍ ନାଟକର ଚ଼ରିତ୍ର ସାଜି
ଓହ୍ଲେଇ ନଥାନ୍ତେ ମଞ୍ଚକୁ
ରକ୍ତ ନିଗାଡ଼ି କବିତା, ଗୀତିନାଟ୍ୟ
ଖଞ୍ଜି ନଥାନ୍ତେ ଜୀବନ ତମାମ
ଅନ୍ୟର ଦହଗଞ୍ଜକୁ ଆପଣେଇ ନେଇ
ସନ୍ତୁଳିତ ଶବ୍ଦ ପାଖୁଡ଼ାକୁ ସଜେଇ ନଥାନ୍ତେ
ଦର୍ଶକ ଓ ପାଠକ ଛାତିରେ ।।

ସତେ କ'ଣ କବିତା ତାଙ୍କୁ ଧରା ଦେଲା
ନା' ନାଟକ ତାଙ୍କୁ ନିଜର କଲା,
ନା' ଗୀତିନାଟ୍ୟ ଜୀବନର ରାହାଟିଏ ଦେଲା
ସେଦିନ ସାର୍ କହୁଥିଲେ କବିତା ସଂପର୍କରେ
କେହି କବିତା ନ ଲେଖିଲେ ଯାଏ ଆସେନା-
କି' କେହି କବିତା ପଢ଼ିଲେ କବି ସ୍ୱର୍ଗକୁ ଛୁଏଁନା-
ତଥାପି କବିତା ଲେଖା ଚାଲିଥିବ
କେହି ନା' କେହି ରକ୍ତ ନଗାଡ଼ି ଲେଖୁଥିବ
କବିତା ସ୍ତବକ ପୃଥିବୀ ଛାତିରେ
ସମସ୍ତେ ବାଟଭାଙ୍ଗି ଫେରିଯିବା ବେଳେ
ମୋ ଗଳ୍ପ, କବିତା, ନାଟକର ଚରିତ୍ର
ମୋ ସହ କଥା ହେବେ ଚିରକାଳ ।। ❑❑❑

ସଭାପତି, ବିରୂପା ସାହିତ୍ୟ ସଂସଦ



# ଆପଣ ଭାଗ୍ୟବାନ

ସୂର୍ଯ୍ୟମଣି ସାମନ୍ତରାୟ

ସେତେବେଳର କଟକ ଜିଲ୍ଲାସ୍ଥ ଧର୍ମଶାଳାର ଅତିରିକ୍ତ ଜିଲ୍ଲା କୃଷି କାର୍ଯ୍ୟାଳୟରେ ଆଠବର୍ଷ ଶସ୍ୟବିଜ୍ଞାନୀ ଭାବେ କାର୍ଯ୍ୟ କରିବା ପରେ ମୋର ବଦଳି ହେଲା ବ୍ରହ୍ମପୁରକୁ । ମୁଁ ୧୯୮୮ ଡିସେମ୍ବର ପହିଲାରେ ବ୍ରହ୍ମପୁର ଉପକୃଷି ନିର୍ଦ୍ଦେଶକଙ୍କ କାର୍ଯ୍ୟାଳୟରେ ଗଂଜାମ ମଣ୍ଡଳ ଶସ୍ୟ ବିଜ୍ଞାନୀ ଭାବେ ଯୋଗ ଦେଇ ବ୍ରହ୍ମପୁରରେ ରହିଲି । ଧର୍ମଶାଳାରେ ରହଣି ସମୟରେ ଯେଉଁ ପ୍ରକାର ସାହିତ୍ୟିକ ପରିବେଶ ମଧ୍ୟରେ ରହିଥିଲି ତାହାର ଅଭାବ ଏଠାରେ ଅନୁଭୂତ ହେଲା । ବିଶେଷ କରି ସେତେବେଳେ ଗ୍ରାମାଞ୍ଚଳର ସାହିତ୍ୟ ଅନୁଷ୍ଠାନ ଭାବେ ଗୋକର୍ଣ୍ଣିକା ସାହିତ୍ୟ ସମାଜ ବେଶ୍ ଏକ ଅଗ୍ରଣୀ ଅନୁଷ୍ଠାନ ଭାବେ ଓଡ଼ିଶାରେ ସୁନାମ ଅର୍ଜନ କରିଥିଲା ।

ବ୍ରହ୍ମପୁର ରହଣି ସମୟରେ ଧର୍ମଶାଳର ସାହିତ୍ୟ, ସଭା ସମିତି କାର୍ଯ୍ୟକ୍ରମ ତଥା ନିବିଡ଼ ବନ୍ଧନରେ ବାନ୍ଧି ହୋଇ ଯାଇଥିବା ସାହିତ୍ୟିକ ବଂଧୁମାନଙ୍କ ସ୍ମୃତି ମୋ ମନକୁ ଆନ୍ଦୋଳିତ କରୁଥାଏ । ବିଶେଷ କରି ଶିଶୁ ସାହିତ୍ୟିକ ବଂଧୁମାନେ ଅଧିକ ମୋ ମାନସ ପଟରେ ଦୃଶ୍ୟ ହେଉଥାଆନ୍ତି । କାରଣ ସେତେବେଳକୁ ମୁଁ ଶିଶୁ ସାହିତ୍ୟ କ୍ଷେତ୍ରରେ କିଛି କରିବା ପାଇଁ ବ୍ରତି ହୋଇ ସାରିଥିଲି ।

ଗଂଜାମ ମାଟି ଯଦିଓ କବି ସମ୍ରାଟ ଉପେନ୍ଦ୍ର ଭଂଜ, ବଳଦେବ ରଥ, ଗୋପାଳକୃଷ୍ଣଙ୍କ ଠାରୁ ଆରମ୍ଭ କରି ତାରିଣୀ ଚରଣ ରଥ, ଶ୍ୟାମସୁନ୍ଦର ରାଜଗୁରୁ ଭଳି ପ୍ରଚଣ୍ଡ ପ୍ରତିଭାଧାରୀ କବି ମନିଷୀମାନଙ୍କୁ ଜନ୍ମ ଦେଇ ପୁଣ୍ୟ ହୋଇଛି । ତଥାପି ମୁଁ ମନେ ମନେ ଅନୁଭବ କଲି ଏଠାରେ ଶିଶୁ ସାହିତ୍ୟ ଦିଗଟି ସେତେଟା ସବଳ ନୁହେଁ । ଏହାର ଉନ୍ନତି କଳ୍ପେ ଶିଶୁ ସାହିତ୍ୟ ଅନୁଷ୍ଠାନଟିଏ ଲୋଡ଼ା । ବ୍ରହ୍ମପୁରର ଶିଶୁ ସାହିତ୍ୟିକ ବଂଧୁ ଅଭିରାମ ପଣ୍ଡାଙ୍କ ସହ ସାକ୍ଷାତ କରି ମୋ ମନ କଥାଟି ଜଣାଇଲି । ଏଥିପାଇଁ ଉଦ୍ୟମ ଚାଲିଲା । ଶେଷରେ ୧୯୮୯ ମସିହା ନଭେମ୍ବର ୧୪ ତାରିଖ ପବିତ୍ର ଶିଶୁ ଦିବସ ଦିନ ଶିଶୁ ସାହିତ୍ୟ ସଂସଦ, ବ୍ରହ୍ମପୁର ଜନ୍ମ ନେଲା ।

୧୯୯୦ ମସିହା ଠାରୁ ଅନୁଷ୍ଠାନର ବାର୍ଷିକ ଉତ୍ସବରେ ଜଣେ ଲେଖାଏଁ ବରିଷ୍ଠ ଶିଶୁ ସାହିତ୍ୟିକଙ୍କୁ ସମ୍ମାନିତ ତଥା ପୁରସ୍କୃତ କରାଯାଉଥିଲା ବେଳେ ୧୯୯୩ ଠାରୁ ଦୁଇ ଜଣ ଶିଶୁ ସାହିତ୍ୟିକଙ୍କୁ ସମ୍ମାନିତ ତଥା ପୁରସ୍କୃତ କରାଯିବା ପାଇଁ ମୋ ପ୍ରସ୍ତାବ ଅନୁସାରେ କମିଟି ଅନୁମୋଦନ କଲା । ସେଥି ମଧ୍ୟରୁ ଗୋଟିଏ ରାଜ୍ୟସ୍ତରୀୟ ସମ୍ମାନ ସ୍ୱର୍ଗତ ରାମଚନ୍ଦ୍ର ଆଚାର୍ଯ୍ୟଙ୍କ ସ୍ମୃତି ପାଇଁ ଉଦ୍ଦିଷ୍ଟ । ସେ ଥିଲେ ଜଣେ ପ୍ରବୀଣ ସାହିତ୍ୟିକ ବିଶେଷ କରି ଶିଶୁ

ସାହିତ୍ୟ କ୍ଷେତ୍ରରେ ଦକ୍ଷିଣ ଓଡ଼ିଶାର ମଧୁସୂଦନ ରାଓ କହିଲେ ଅତ୍ୟୁକ୍ତି ହେବ ନାହିଁ । ଅକ୍ଷର ଶିକ୍ଷା ଠାରୁ ବିଦ୍ୟାଳୟ ପର୍ଯ୍ୟନ୍ତ ବହୁ ପାଠ୍ୟ ପୁସ୍ତକ ଓ ଶିଶୁ ପାଠ୍ୟ ଉପଯୋଗୀ ପୁସ୍ତକମାନ ରଚନା କରି ଯାଇଛନ୍ତି ।

ତେବେ ୧୯୯୩ ମସିହାରେ ଅନୁଷ୍ଠାନର ଚତୁର୍ଥ ବାର୍ଷିକ ଉତ୍ସବରେ ପ୍ରଥମ ଥର ପାଇଁ ଦିଆଯାଇଥିବା ଏ ପ୍ରକାର ସମ୍ମାନଜନକ ପୁରସ୍କାର ପାଇଁ ଉପଯୁକ୍ତ ବ୍ୟକ୍ତି କିଏ ସେଥିପାଇଁ ମୁଁ ମନ ଭିତରେ ଅନ୍ୱେଷଣ କରି ଚାଲିଲି । ପଲ୍ଲୀକବି ନନ୍ଦକିଶୋର ବଳଙ୍କ ଜନ୍ମପୀଠ ପୁଣ୍ୟଭୂମି, କଟକ ଜିଲ୍ଲାର କୁସୁପୁରର ଦ୍ୱିତୀୟ ନନ୍ଦକିଶୋର ନିଚ୍ଛକ ବର୍ଷୀୟାନ ଶିଶୁ ସାହିତ୍ୟିକ ଯାହାର କବିତା ପିଲାମାନଙ୍କୁ ମନ୍ତ୍ରମୁଗ୍ଧ କରିଦିଏ ଏବଂ ଦ୍ୱିତୀୟ ଶ୍ରେଣୀ ସାହିତ୍ୟ ବହିରେ ସ୍ଥାନିତ କାଳଜୟୀ କବିତା ‘‘ଏଇ ଘରଟିରେ ଜନମ ମୋର’’ କୁ ପାଠ କରି କୁନି କୁନି ଛାତ୍ରଛାତ୍ରୀଙ୍କର ହୃଦୟରେ ଯିଏ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛନ୍ତି ସେହି କବିତାର ରଚୟିତା କବି ନନ୍ଦକିଶୋର ସାମଲ ଉକ୍ତ ସମ୍ମାନ ପାଇଁ ଯୋଗ୍ୟତମ ବ୍ୟକ୍ତି ଭାବେ ମନସ୍ଥ କଲି । ଅନୁଷ୍ଠାନର କର୍ମକର୍ତ୍ତାମାନେ ସମସ୍ତେ ବିନା ଦ୍ୱିଧାରେ ଏହି ପ୍ରସ୍ତାବକୁ ଗ୍ରହଣ କଲେ । ନନ୍ଦକିଶୋର ବାବୁଙ୍କୁ ମୁଁ ସାଧାରଣ ସଂପାଦକ ହିସାବରେ ଏ କଥା ପତ୍ର ମାଧ୍ୟମରେ ଜଣାଇ ଦେଲି । ସେ ମଧ୍ୟ ତାଙ୍କର ସମ୍ମତି ପ୍ରକାଶ କରି ମୋ ନିକଟକୁ ପତ୍ର ଦେଲେ ।

୧୯୬୨-୬୩ରୁ ପ୍ରାଥମିକ ସ୍ତରରେ ପାଠ୍ୟ ପୁସ୍ତକଗୁଡ଼ିକ ଜାତୀୟକରଣ କରାଗଲା । ସେତେବେଳେ ଲେଖକଙ୍କର ନାମ ସେହି ପୁସ୍ତକରେ ରଖା ଯାଉନଥିଲା । ତେଣୁ ଲେଖକଙ୍କର ନାମ ଜାଣିବା ଛାତ୍ରଛାତ୍ରୀ, ଶିକ୍ଷକ ତଥା ପାଠକଙ୍କ ପାଇଁ ସୁଯୋଗ ନଥିଲା । ତେଣୁ ଏହି ସମ୍ମାନ ପ୍ରଦାନର ଅନ୍ୟ ଏକ ଉଦ୍ଦେଶ୍ୟ ଥିଲା ବହୁ ଚର୍ଚ୍ଚିତ ଏତେ ସୁନ୍ଦର ଚମତ୍କାର କବିତାର ସ୍ରଷ୍ଟା ନନ୍ଦକିଶୋର ବାବୁଙ୍କୁ ସମସ୍ତେ ଜାଣନ୍ତୁ ଓ ଚିହ୍ନନ୍ତୁ ।

ପତ୍ରାଳାପ ଅନୁସାରେ ସେ ଆସି ବ୍ରହ୍ମପୁରରେ ତା ୧୩.୧୧.୧୯୯୩ ମଧ୍ୟାହ୍ନରେ ପହଞ୍ଚିଲେ ଏବଂ ଆମ ଘରେ ଅତିଥି ହୋଇ ରହିଲେ ।

ଆମ ଶିଶୁ ସାହିତ୍ୟ ସଂସଦର ବ୍ରହ୍ମପୁରର ଚତୁର୍ଥ ବାର୍ଷିକ ଉତ୍ସବ ସ୍ଥାନୀୟ ମ୍ୟୁନିସପାଲଟି ଟାଉନ ହଲ୍ ଠାରେ ତା ୧୪.୧୧.୧୯୯୩ ପବିତ୍ର ଶିଶୁ ଦିବସ ଅପରାହ୍ନରେ ଅନୁଷ୍ଠିତ ହେଉଥାଏ । ନନ୍ଦକିଶୋର ବାବୁଙ୍କ ସହ ମୁଁ ଓ ମୋର ପରିବାର ସେଠାକୁ ଗଲୁ । ବର୍ଷୀୟାନ କବି, ବିଶଷ୍ଟ ସମାଜସେବୀ ତଥା ସଂସଦର ସଭାପତି ଶ୍ରୀଯୁକ୍ତ ବ୍ରଜସୁନ୍ଦର ପଟ୍ଟନାୟକଙ୍କ ଅଧ୍ୟକ୍ଷତାରେ କାର୍ଯ୍ୟକ୍ରମ ଆରମ୍ଭ ହେଲା । ମୁଁ ଯେତେବେଳେ ଆଜିର ସମ୍ମାନଜନକ ରାଜ୍ୟସ୍ତରୀୟ ‘ରାମଚନ୍ଦ୍ର ସ୍ମୃତି ପୁରସ୍କାର’ର ସୁଯୋଗ୍ୟ ବ୍ୟକ୍ତି ହେଉଛନ୍ତି ‘କବି ନନ୍ଦକିଶୋର ସାମଲ’ ଯିଏ କି ଦ୍ୱିତୀୟ ଶ୍ରେଣୀ ଦ୍ୱିତୀୟ ଭାଗ ସାହିତ୍ୟ ପୁସ୍ତକ ଆମ ପାଠ ବହିରେ ସ୍ଥାନିତ ‘ଆମ ଘର’ - କବିତାର ସ୍ରଷ୍ଟା ବୋଲି ପରିଚିତ କରାଇଲି,

ସେତେବେଳେ ଉପସ୍ଥିତ ଥିବା ଛାତ୍ରଛାତ୍ରୀ, ଶିକ୍ଷକ, ଅଭିଭାବକ ତଥା ସାରସ୍ୱତ ପ୍ରେମୀମାନେ ଆନନ୍ଦ ଉଲ୍ଲାସରେ ଘନଘନ କରତାଳି ଦେଇ ସ୍ୱାଗତ ଜଣାଇଲେ।ଏହି ପରି ଜଣେ ପ୍ରଖ୍ୟାତ କବିଙ୍କର ଦର୍ଶନ ପାଇ ସମସ୍ତେ ନିଜକୁ ଧନ୍ୟ ମନେ କଲେ । ତାଙ୍କର କବିତା ସହିତ ଯଦିଓ ପୂର୍ବର ସମସ୍ତେ ଭଲ ଭାବରେ ସୁପରିଚିତ ତାଙ୍କୁ କେହି ସ୍ୱଚକ୍ଷୁରେ ଦେଖିବାର ସୁଯୋଗ ପାଇ ନଥିଲେ । ତେଣୁ ସମସ୍ତେ ନିଜ ନିଜକୁ କୃତାର୍ଥ ମନେ କରୁଥାଆନ୍ତି ।

ସଭାକାର୍ଯ୍ୟ ଯଥାରୀତିରେ ଚାଲିଲା । ସ୍ୱର୍ଗତ ରାମଚନ୍ଦ୍ର ଆଚାର୍ଯ୍ୟଙ୍କ ସ୍ମୃତି ଉଦ୍ଦେଶ୍ୟରେ ପ୍ରଦତ୍ତ 'ରାମଚନ୍ଦ୍ର ଆଚାର୍ଯ୍ୟ ସ୍ମୃତି ସମ୍ମାନ', ମୁଖ୍ୟ ଅତିଥି ଶ୍ରୀଯୁକ୍ତ ଚନ୍ଦ୍ରଶେଖର ସାହୁ ତତ୍‌କାଳୀନ ନଗରପାଳ, ବ୍ରହ୍ମପୁର ଓ ବର୍ତ୍ତମାନର ସାଂସଦଙ୍କ ଦ୍ୱାରା କବି ନନ୍ଦକିଶୋର ସାମଲଙ୍କୁ ପ୍ରଦାନ କରାଯାଇଥିଲା । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗର ଅବସରପ୍ରାପ୍ତ ପ୍ରାଧ୍ୟାପକ ଡକ୍ଟର ସୀତାକାନ୍ତ ମହାପାତ୍ର ମୁଖ୍ୟ ବକ୍ତା ଭାବେ ଯୋଗ ଦେଇ ଶିଶୁ ସାହିତ୍ୟ ଓ ନନ୍ଦକିଶୋର ସାମଲଙ୍କ ପ୍ରତିଭା ବିଷୟରେ ଆଲୋକପାତ କରି ଦୀକ୍ଷାନ୍ତ ଭାଷଣ ଉପସ୍ଥାପନା କରିଥିଲେ ।

ନନ୍ଦକିଶୋର ବାବୁ ସମ୍ବର୍ଦ୍ଧନାର ପ୍ରତ୍ୟୁତ୍ତରରେ ଏକ ସାରଗର୍ଭକ ଓ ମର୍ମସ୍ପର୍ଶୀ ବକ୍ତବ୍ୟ ପ୍ରଦାନ କରିଥିଲେ ସରଳ, ସାବଲୀଳ, ବୋଧଗମ୍ୟ ହୃଦୟକୁ ଉଦ୍‌ବେଳିତ କରିବା ଭଳି ତାଙ୍କର ମୁଖ ନିସୃତ କବିତାର ଅନର୍ଗଳ ପଂକ୍ତିମାନ ଉପସ୍ଥିତ କୋମଳମତି ଛାତ୍ରଛାତ୍ରୀ, ଶିକ୍ଷକ, ଶିକ୍ଷୟତ୍ରୀ ଆଦି ସମସ୍ତଙ୍କୁ ମନ୍ତ୍ରମୁଗ୍ଧ କରିପାରିଥିଲା । ଉତ୍ସବ ଶେଷରେ ସମସ୍ତ ଶ୍ରୋତା, ଦର୍ଶକ ଯୋଗଦାନ କରିଥିବା ବ୍ୟକ୍ତିମାନେ ତାଙ୍କ ପ୍ରତି ଆକୃଷ୍ଟ ହୋଇ ତାଙ୍କ ଚତୁଃପାର୍ଶ୍ୱରେ ଘେରି ଯାଇ ଭକ୍ତପୂତ ଆଳାପ ଆଲୋଚନାରେ ମଜି ଯାଇଥିବା ଦେଖା ଯାଇଥିଲା ବେଳେ ଶିକ୍ଷକ, ଅଭିଭାବକମାନେ ଛାତ୍ରଛାତ୍ରୀଙ୍କୁ ଧରି ନନ୍ଦକିଶୋର ବାବୁଙ୍କ ସହ ବ୍ୟାକୁଳତାର ସହ ଫଟୋ ଉଠାରେ ବ୍ୟସ୍ତ ରହି ଥାଆନ୍ତି । ସେତେବେଳେ ଭାବୁଥାଏ ଯାହା ହେଉ ଶିଶୁ ସାହିତ୍ୟର ଏହିପରି ଏକ ଅନନ୍ୟ ପ୍ରତିଭାଧାରୀଙ୍କୁ ସମ୍ମାନିତ କରି ଶିଶୁ ସାହିତ୍ୟ ସଂସଦ ବ୍ରହ୍ମପୁର ଗୌରବାନ୍ୱିତ ହୋଇଛି ।

ସେହିଦିନ ସେ ଆମ ଘରେ ରାତ୍ରୀ ଯାପନ କଲେ । ରାତିରେ ଶୋଇଲା ପୂର୍ବରୁ ବାର୍ଷିକ ଉତ୍ସବର ପ୍ରତିଟି କାର୍ଯ୍ୟକ୍ରମ ଇତ୍ୟାଦିରେ ଉଦ୍‌ବୋଧିତ ହୋଇ ତାଙ୍କର ମନର କଥାକୁ ମୋ ଠାରୁ ଖଣ୍ଡିଏ କାଗଜ ନେଇ ସ୍ୱହସ୍ତରେ ଲିପିବଦ୍ଧ କରି କହିଲେ- ସାମନ୍ତରା ବାବୁ ! ଏହି କାଗଜ ଖଣ୍ଡିକୁ ନିଅନ୍ତୁ । ଆପଣ ଏବଂ ଆପଣଙ୍କ ଅନୁଷ୍ଠାନକୁ ମୁଁ ଯେଉଁପରି ଭାବେ ଦେଖିଲି ତାହାକୁ ଲେଖିଦେଲି । ରଖି ଥାଆନ୍ତୁ । ମୁଁ ତାହାକୁ ସାଦରେ ଗ୍ରହଣ କରି ଆଜିଯାଏ ଯତ୍ନ ସହକାରେ ସାଇତି ରଖିଥିଲି । ତାହାର ଅବିକଳ ନକଲ ନିମ୍ନରେ ପ୍ରଦତ୍ତ କରାଗଲା ।

[illegible]

× × ×

[illegible]

ସଂସଦର ବାର୍ଷିକ ଉତ୍ସବର ପରଦିନ ଅର୍ଥାତ୍ ତା ୧୫.୧୧.୧୯୯୩ ଦିନ ନନ୍ଦକିଶୋର ବାବୁଙ୍କୁ ବ୍ରହ୍ମପୁର ନଗରର ବିଭିନ୍ନ ଦୋକାନ ବଜାର ଆଦି ବୁଲାଇ ଦେଖାଇଲି । ସନ୍ଧ୍ୟାରେ ସେହି ଟାଉନ୍ ହଲଠାରେ 'ମହାନ ସଂଘ ସମାଜ ସେବା ଅନୁଷ୍ଠାନ'ର ଏକ ସଭାରେ ଯୋଗ ଦେଲୁ । ସଂସ୍ଥାର କର୍ମକର୍ତ୍ତାମାନେ ମଧ୍ୟ ଆମ ଦୁହିଁଙ୍କୁ ନିମନ୍ତ୍ରିତ କରିଥିଲେ । ପୂର୍ବଭଳି ନନ୍ଦକିଶୋର ବାବୁଙ୍କ ପାଖରେ ସାହିତ୍ୟ ପ୍ରେମୀମାନଙ୍କର ଭିଡ଼ । ବିଭିନ୍ନ ଆଳାପ ଆଲୋଚନା ଚାଲିଲା । ସେହି ସମୟରେ କେତେକ ବଂଧୁ ମୋତେ ପଚାରିଲେ ଶ୍ରୀଯୁକ୍ତ ସାମଲ କେଉଁଠାରେ ବର୍ତ୍ତମାନ ଅବସ୍ଥାନ କରୁଛନ୍ତି । ମୁଁ ଉତ୍ତର ଦେଇଥିଲି, ସେ ଆମ ଘରେ ରହୁଛନ୍ତି । ଏ କଥା ଶୁଣି ସେମାନେ ମୋତେ ଖୁସିରେ କହିଲେ ଯାହା ହେଉ ଆପଣ ଭାଗ୍ୟବାନ । ❑❑❑

ଅବସରପ୍ରାପ୍ତ ଜିଲ୍ଲା କୃଷି ଅଧିକାରୀ, କେଉଁଝର କଲୋନୀ, କଟକ

# କୋଉ ଦିନ ସତେ ଆସିବ କୁହ !

ଡକ୍ଟର ସୁନାମଣି ରାଉତ

ଆକାଶବାଣୀର ତଳବାରଣ୍ଡାରେ
ତମ ସହ ସେ ଦିନ ସେତିକି ଦେଖା,
ହସ ହସ ମୁହେଁ ପଚାରିଲ ମତେ
"କେମିତି ଚାଲିଛି ତମରି ଲେଖା ?"

କହିଲ ସେଦିନ ଆମ ଘର ଆଡ଼େ
ଆସିବ ଅଛି ଯେ ଜରୁରୀ କାମ,
ତମ କଥା ତମ ମନରେ ରହିଲା
ଚାଲି ଗଲ ଆହା ସରଗ ଧାମ !

ବାଟେ ଘାଟେ ଅବା ସଭା ସମିତିରେ
ଯେତେଥର ତମେ ହୋଇଛ ଭେଟ,
ସବୁଥର ମୁହିଁ ଜାଣି, ତମେ ତ
ଧନରେ ନୁହଁଇ ମନରେ ଶେଠ ।

ତମ ହସ, ତମ କଥା ଦି'ପଦରେ
ଆପଣା ପଣଟି ଏମିତି ଥିଲା,
ପରକୁ ନିଜର କରିପାରୁଥିଲ
ଗାଆଁଠୁଁ ସହର, ବୁଢାଠୁଁ ପିଲା ।

ତମ 'ଆମ ଘର' କାଗଜରେ ନୁହେଁ
ସବୁରି ମନରେ ହୋଇଛି ଛପା,
ମୁଁ ପଢିଥିଲି, ମୋ'ପୁଅ ପଢୁଛି
ପଢିଥଲେ ପୁଣି ମୋ'ଭାଇ ଅପା ।

ମୋ'ପୁଅ କହୁଛି ତମକୁ ଦେଖିବ
ଆସିବ ତମେ, ମୋ' ଝିଅର ରାଣ,
ଘରଣୀ ମୋହର ସଜାଡି ରଖିଛି
'ପାଣିଡ଼ାଳ', ଚାହା, ବିଡିଆ ପାନ।

ସରୁ ଚାଉଳର ଭାତ, ମୁଗଡାଲି
ମହୁରାଳି ମାଛ ବେଶର, ରାଇ,
ବାଡ଼ି ଶାଗ ଭଜା, ଛତୁ, ବଡିଚୁରା
ବାଢିକି ରଖିଛି ତମରି ପାଇଁ।

'ଆମ ଘର' ଆଜି ଛାତ ପାଲଟିଛି
ନାହିଁ ନଡ଼ା, ଶେଣୀ, ବାଉଁଶ ରୁଅ,
କଥା ଦେଇଥିଲ ଆସିବାକୁ ତମେ
କୋଉ ଦିନ ସତେ ଆସିବ କୁହ !! ❑❑❑

ରାଜାବଗିଚା, କଟକ-୯

# ସର୍ବେ ଚଳିବେ କାଳ ବଳେ
# ଯଶ ରହିବ ମହୀ ତଳେ

**କୈଳାସ ଚନ୍ଦ୍ର ମହାନ୍ତି**

ମନୁଷ୍ୟ ସମ୍ପଦ ଈଶ୍ୱର ସୃଷ୍ଟ ବୁଦ୍ଧି ବିବେକ ଜ୍ଞାନ ବଳରେ ଏହା ଜୀବ-ଜଗତ ମଧ୍ୟରେ ଏକ ସ୍ୱତନ୍ତ୍ର ସ୍ଥାନ ଲାଭ କରିଛି। କିନ୍ତୁ ସବୁ ମଣିଷ ସମାନ ନୁହନ୍ତି। ସମସ୍ତେ କିନ୍ତୁ ଜୀବନକୁ ଆନନ୍ଦମୟ କରିବା ଲକ୍ଷ୍ୟରେ ଥାଆନ୍ତି। ଏହି ଆନନ୍ଦ ଗୋଟିଏ ଉତ୍ସରୁ ମିଳି ନଥାଏ। କେହି ଖାଇବାକୁ ଆନନ୍ଦ ପାଏ ତ, କେହି ଗାଇବାରୁ ଆନନ୍ଦ ପାଏ କେହି ପଢାପଢିରୁ ଆନନ୍ଦ ପାଏତ, କେହି ଅବା ଖେଳରୁ। ଏହିଭଳି ଅସରନ୍ତି ସାରଣୀ ପଡିଛି। କିନ୍ତୁ ଆନନ୍ଦ ମନରେ ଅନ୍ୟକୁ ଆନନ୍ଦ ବାଣ୍ଟିବାର ଲୋକ ସମାଜ ମଧ୍ୟରେ କମ୍ ଥାନ୍ତି। ଯେଉଁମାନେ ଏହା କରିଥାନ୍ତି ସେମାନଙ୍କୁ ସମାଜର ଅମୂଲ୍ୟ ସମ୍ପଦ ବୋଲି ମନେ କରାଯାଏ। ସେମାନଙ୍କ ଜୀବନ ଧନ୍ୟ। ସେମାନେ ହାଟରେ, ବାଟରେ ସବୁଠାରେ ପୂଜା ପାଇଥାନ୍ତି। ଯୁଗ ଯୁଗ ପାଇଁ ମଣିଷଙ୍କ ମନରେ ଚିତ୍ରଟିଏ ପରି ଛାପି ହୋଇ ରହିଯାନ୍ତି। କାଳଜୟୀ ହୁଅନ୍ତି।

ଆମ ଅଞ୍ଚଳରେ ସେହିଭଳି ଏକ ଲୋକଥିଲେ ସ୍ୱର୍ଗତ ନନ୍ଦ କିଶୋର ସାମଲ (ନନ୍ଦ ବାବୁ)। ଆଜି ଇହ ଜଗତରେ ନାହାନ୍ତି ସତ କିନ୍ତୁ ତାଙ୍କର ନାମ ସ୍ମରଣ ମାତ୍ରେ ତାଙ୍କର ରୂପ ଆଖି ଆଗରେ ଝଲସି ଉଠୁଛି। ମନେ ହେଉଛି ସତେ ଯେପରି ସେ ସାଥୀରେ ଢଳି ଢଳି ଚାଲୁଛନ୍ତି, ବୁଲୁଛନ୍ତି, ହସୁଛନ୍ତି ଓ ସେହିଭଳି ମିଠା କଥା କହୁଛନ୍ତି ବାସ୍ତବିକ ଅନ୍ତରରେ ଭଲ ପାଉଥିବା ଲୋକେ କେବେ ହେଲେ ତାଙ୍କୁ ଭୁଲି ପାରିବେ ନାହିଁ - ଏହା ନିରାଟ ସତ୍ୟ।

ନନ୍ଦ ବାବୁଙ୍କ ଭଳି ଯଶସ୍ୱୀ, ଆଦର୍ଶ ଶିକ୍ଷକ ବିରଳ। ତାଙ୍କର ମହନୀୟ ଗୁଣ ନିକଟରେ ସମସ୍ତଙ୍କର ମୁଣ୍ଡ ନଇଁ ଯାଉଥିଲା। ସେ ହସୁଥିଲେ - କଥାରେ କଥାରେ ଅନ୍ୟକୁ ହସାଉଥିଲେ। ନନ୍ଦ କିଶୋର ବିଦ୍ୟାମନ୍ଦିରର ଶ୍ରେଣୀ ପ୍ରକୋଷ୍ଠରେ ସାହିତ୍ୟ ପଢାଉଥିଲା ବେଳେ ଅକାଟ୍ୟ ଯୁକ୍ତି ବାଢୁଥିଲେ। ଅଜସ୍ର ଉଦାହରଣ ମାଧ୍ୟମରେ ପିଲାମାନଙ୍କର ଚଗଲା ମନକୁ ସ୍ଥିର କରୁଥିଲେ। ତାଙ୍କର ସାହତ୍ୟ ଆଲୋଚନା କାଳରେ ପିଲାମାନେ ହୁଁ-ଚୁଁ ହେଉନଥିଲେ। ପରୀକ୍ଷାଖାତା ମୂଲ୍ୟାୟନ ବେଳେ ତାଙ୍କ ହାତରେ ଅଧିକ ନମ୍ବର ପାଇବା କଷ୍ଟକର ଥିଲା। ଅବଶ୍ୟ ପିଲାଙ୍କ ପକ୍ଷେ ଏହା ଶୁଭ-ଦାୟକ ହେଉ ଥିଲା। କାରଣ ସାହିତ୍ୟରେ କିଭଳି ଶବ୍ଦ ସଂଯୋଜନା, ବାକ୍ୟଗଠନ ହେବା ଉଚିତ ପରୀକ୍ଷା ଖାତାରୁ ହିଁ ପିଲାଏ ଶିକ୍ଷାଲାଭ କରୁଥିଲେ।

ଶିକ୍ଷକତା ଯଦିଓ ତାଙ୍କର ବୃତ୍ତି ଥିଲା, କବିତା ଲେଖିବା, ନାଟକ ରଚନା କରିବା

ଗଳ୍ପ ଓ ପ୍ରବନ୍ଧ ଲେଖିବା ତାଙ୍କର ଏକ ପ୍ରକାର ନିଶା ଓ ସଉକ ଥିଲା । ତାଙ୍କ ଭାଷାରେ କବିତା ହିଁ ତାଙ୍କ ଜୀବନ । ଅତି ଗାଉଁଲି ଭାଷାରେ ତାଙ୍କ ରଚନାବଳୀ ପିଲାଠାରୁ ବୁଢା ସାକ୍ଷର ଠାରୁ ନିରକ୍ଷର ପର୍ଯ୍ୟନ୍ତ ଯେ କେହି ତାଙ୍କ କବିତା ପଢେ ଅବା ଶୁଣେ କିଛିଟା ଅବୁଝା ରହେ ନାହିଁ । ଅତି ବାସ୍ତବଚିତ୍ର ନିଖୁଣ ଭାବରେ ତାଙ୍କ କବିତାରେ ଫୁଟି ଉଠୁଥିଲା । ଜଣଙ୍କର ହୃଦୟସ୍ପର୍ଶୀ ଓ ମନଛୁଆଁ ହେଉଥିଲା । ସେଥିପାଇଁ ପାଠ ନପଢିଥିବା ପିଲାଏ ଗାଁ ଦାଣ୍ଡରେ, ସାଥୀ ମେଳରେ, ମା ଆଗରେ ଆନନ୍ଦ ମନରେ ଗାଆନ୍ତି

ବୋଉ ଲୋ ବୋଉ
ଆଜି କଲୁ ଟିକେ ଅରୁଆ ଯାଉ
ସେଥିରେ ପଡିବ ଗୁଡ ନଡିଆ
ଭାରି ସୁଆଦିଆ ଭାରି ବଢିଆ
ମୁଁ ଖାଇଛି, ମଜା ପାଇଛି, ଆଉ ଖାଇବାକୁ ମନେ କରିଛି ।

ଏହି ପରି ଅନେକ ସରଳ, ସାବଲୀଳ ପଲ୍ଲୀ କବିତା ସୃଷ୍ଟି କରିବା ନନ୍ଦ ବାବୁଙ୍କର ବୈଶିଷ୍ଟ । ସେ ଜଣେ ସ୍ରଷ୍ଟା ଓ ପ୍ରକୃତ ସାରସ୍ୱତ ସାଧକ ଥିଲେ । ତାଙ୍କର ନିଷ୍ଠା ଏକାଗ୍ରତା, ଚିନ୍ତନଶକ୍ତି ଅସାଧାରଣ ଥିଲା । ସତ୍ୟ ଉପରେ ଆଧାରିତ ବାସ୍ତବଧର୍ମୀ କବିତା ରଚନା କରିବା ତାଙ୍କର ଧର୍ମ ଥିଲା । ପଲ୍ଲୀଭୂଇଁରୁ ବିଷୟବସ୍ତୁ ସାଉଁଟି ସେଥିପାଇଁ ଅତି ଗାଉଁଲି ଶବ୍ଦ ଯୋଡି କବିତାରେ ଭାବ ଫୁଟାଇବାରେ ସେ ଥିଲେ ନିଖୁଣ ଶିଳ୍ପୀ ।

ସେ କହୁଥିଲେ ଆଦର୍ଶବୋଧ ହିଁ ମଣିଷର ଶ୍ରେଷ୍ଠ ସମ୍ପତ୍ତି ଯାହା ମଣିଷର ସ୍ୱାତନ୍ତ୍ର ରକ୍ଷା କରିବାରେ ସମର୍ଥ ହୁଏ । ଏଣୁ ନିରଳସ ଜୀବନ କଟାଇବା ତାଙ୍କର ଅନ୍ୟ ଏକ ବିଶିଷ୍ଟ ଗୁଣ ଥିଲା । ତାଙ୍କର ବେଶ-ପୋଷାକ, ଖାଦ୍ୟ-ପେୟ, ଚାଲିଚଳନ, ଆଚାର-ବ୍ୟବହାର କଥାବାର୍ତ୍ତା ଅନ୍ୟମାନଙ୍କ ପାଇଁ ଉଦାହରଣ ମନେ ହେଉଥିଲା । ଅତି ଗାଉଁଲ ଭାବେ ସେ ଚଳିବାକୁ ପସନ୍ଦ କରୁଥିଲେ । ପଳାଶଫୁଲ ହେବା ଅପେକ୍ଷା ବଣ ମଲ୍ଲୀଟିଏ ହୋଇ ରହିବା ବରଂ ଶ୍ରେୟସ୍କର – ଏହା ଥିଲା ତାଙ୍କର ନୀତି । ଗର୍ବ, ଅହଂକାର, ହିଂସା, ଲୋଭ, କପଟତା ଠାରୁ ଦୂରରେ ରହିବାକୁ ସେ ସଦା ସର୍ବଦା ଚେଷ୍ଟିତ ଥିଲେ । ପାଲଗଦା ଉପରେ ଛିଡା ହୋଇ ନିଜର ବଡିମାପଣ ଦେଖାଇ ନିଜକୁ ବଡ଼ ବୋଲି କହିବାକୁ ସେ ପସନ୍ଦ କରୁନଥିଲେ । ସେ କହୁଥିଲେ ସେଣ୍ଟ ପକାଇ ନିଜର ବାସନା ବଢାଇବା ଅପେକ୍ଷା ନିଜ ଠାରେ ଯଦି କିଛି ବାସନା ଅଛି ତାହାକୁ ବାହାର କରି ଅନ୍ୟକୁ ଆକୃଷ୍ଟ କରିବା ଆବଶ୍ୟକ । କାରଣ ମଣିଷ ନିଜର ଅନ୍ତର୍ନିହିତ ଗୁଣବଳରେ ବଡ ହୋଇଥାଏ । ସେହିଭଳି ବଜାରରେ ତେଲ-ଲୁଣ ସଉଦା, ପନିପରିବା ଓ ମାଛ ଆଦି କିଣିଲା ବେଳେ ସେ ଅଧିକ ପଇସା ବଦଳରେ ଜିନିଷ କିଣୁ ନଥିଲେ । ପଚାରିଲେ କହୁଥିଲେ ସବୁଦିନେ ଚଳିଲା ଭଳି ବ୍ୟବସ୍ଥା କରିବା ଉଚିତ । (Cut your coat according to your cloth) । ଆଜି

ତେଲିଆ ମୁଣ୍ଡ କାଲି ନୁଖୁରାମୁଣ୍ଡ ଦେଖାଇବା କୁଆଡକୁ ପାଏ ? ଖୁବ୍ କମ୍ ଲୋକଙ୍କଠାରୁ ଏଭଳି ବାସ୍ତବଧର୍ମୀ ଉପଦେଶ/ପରାମର୍ଶ ଶୁଣିବାକୁ ମିଳିଥାଏ। ତାଙ୍କ କଥା ଓ କାର୍ଯ୍ୟ ମଧ୍ୟରେ କିଛି ଫରକ ନଥିଲା। ସେ ସର୍ବଦା ନିଜ କାର୍ଯ୍ୟ ମାଧ୍ୟମରେ ଅନ୍ୟକୁ ପରାମର୍ଶ ଦେଉଥିଲେ।

ବାଲିଚନ୍ଦ୍ରପୁର ବଜାର ତାଙ୍କର ଅତି ପ୍ରିୟ ଚରାଭୂଇଁଥିଲା। ବଜାରକୁ ଆସି ଖବର କାଗଜ ପଢିବା, ପ୍ରିୟ ଲୋକଙ୍କୁ ଖୋଜି ଭେଟିବା, ଦିପଦ ଦୁଃଖ-ସୁଖ ହେବା ଏହା ତାଙ୍କର ନିତି ଦିନିଆ କାର୍ଯ୍ୟଥିଲା। କେହି ଲେଖାଟିଏ ଦେଖାଇ ସଂଶୋଧନ କରିବାକୁ ଚାହିଁଲେ ସେ ତତ୍‌କ୍ଷଣାତ୍ ବସି ପଡି କାର୍ଯ୍ୟ ସାରୁଥିଲେ। ସେଥିପାଇଁ ଭଲ ସମୟ/ଭଲ ସ୍ଥାନରେ ଆବଶ୍ୟକ ପଡୁ ନଥିଲା। ଗୁଣି ଲୋକମାନଙ୍କୁ ସେ ଅନ୍ତର ସହିତ ଭଲ ପାଉଥିଲେ। ମୁଁ ତାଙ୍କୁ ଭୁଲି ପାରିବି ନାହିଁ। କାରଣ ତାଙ୍କର ସଂଜମୀ ଆଚରଣ ଓ ଉପଦେଶ ମୋତେ ଯଥେଷ୍ଟ ପ୍ରଭାବିତ କରିଥିଲା।

ଏ ଦୁନିଆଁ ଛାଡି ଚାଲିଯିବାକୁ ଏକ ନିର୍ଦ୍ଦିଷ୍ଟ ସମୟ ଥାଏ। ତାହା କାହାରିକୁ ଜଣା ନଥାଏ। ସେ ନିଷ୍ଠୁର ସମୟ ଅଜାଣତରେ ଆସେ, ଯାହାକୁ ସାଥୀରେ ଧରି ନେଇଯିବା କଥା ନେଇଯାଏ। ନନ୍ଦ ବାବୁଙ୍କ ଭାଗ୍ୟରେ ତାହାହିଁ ଘଟିଛି। କିନ୍ତୁ ସେ ଆଦ୍ୟାବଧି ଜୀବିତ ଅଛନ୍ତି ତାଙ୍କ କବିତାରେ, ରେଡିଓ ଓ ଟିଭି ଷ୍ଟେସନରେ। ତାଙ୍କୁ ମିଳିଥିବା ପ୍ରଶଂସା ପତ୍ର ସମୂହ ତାଙ୍କ ଘରେ ତାଙ୍କ ପାଇଁ ଅମୂଲ୍ୟ ସମ୍ପଦ ଭଳି ରହିଛି। ଯାହାକୁ ମୂଲ୍ୟାୟନ କଲେ ଜଣେ ବିସ୍ମୟାଭିଭୂତ ହୁଏ। ମନରେ ଆସେ ସତରେ ଜଣା ପଡୁ ନଥିଲେ ବି ସେ କେଡେ ମହାନ୍ ବ୍ୟକ୍ତି ନଥିଲେ !

ଆମ ଅଞ୍ଚଳକୁ ସାହିତ୍ୟ କ୍ଷେତ୍ରରେ ସମୃଦ୍ଧ ଓ ବୁଦ୍ଧିମନ୍ତ କରିବା ପାଇଁ ଯେଉଁ ବରପୁତ୍ର ଗଣଙ୍କର ତାଲିକା ରହିଛି ସ୍ୱର୍ଗତ ନନ୍ଦ କିଶୋର ସାମଲ ସେହି ତାଲିକା ମଧ୍ୟରେ ସ୍ଥାନ ନିରୂପଣ କରିଗଲେ ଜଣେ ଶିଶୁ ସାହିତ୍ୟିକ ଭାବରେ। ତାଙ୍କର ସୃଷ୍ଟି ସାହିତ୍ୟାକାଶରେ ଉଜ୍ଜ୍ୱଳ ନକ୍ଷେତ୍ର ସଦୃଶ। ଆମ ଅଞ୍ଚଳ ସେଥିପାଇଁ ଗର୍ବିତ।

ନିଜ ଲେଖା ଓ ମହନୀୟ ଗୁଣ ମାଧ୍ୟମରେ ସେ ପ୍ରମାଣ କରିଦେଇଗଲେ ଭାଗବତର ସେହି କାଳଜୟୀ ବାଣୀକୁ -

"ସର୍ବେ ଚଳିବେ କାଳ ବଳେ
ଯଶ ରହିବ ମହୀତଳେ"

ସେହି ଦେବ ପ୍ରତିମ ଆତ୍ମା ନିକଟରେ ମୋ ସଶ୍ରଦ୍ଧ ପ୍ରଣାମ। ❑❑❑

ଅବସର ପ୍ରାପ୍ତ ପ୍ରଧାନଶିକ୍ଷକ
ବାଲିଚନ୍ଦ୍ରପୁର ମ.ଇ. ସ୍କୁଲ

# ବିରୂପା କୂଳରେ ବିଷୁବ ବିହାର

ଶ୍ରୀ ମହାଦେବ ମହାନ୍ତି

(ଆଜି)ଜୋଛନା ପଖଳା ପୁନେଇ ରାତିରେ  ଚନ୍ଦ୍ରମା ଜାଳେ ବତି
ଛିନ୍ନ କରନା ପ୍ରୀତି ବନ୍ଧନ-ଏ ଯେ ବିଷୁବର ରାତି । ।୦।
ଦିନ ଥିଲା ଦିନେ ଓଡ଼ିଆ ଗରବ ବାଣୀ ବରସୁତ ଗଣେ,
ଏଇ ବିରୂପାର କୋଳେ ଖେଳା କରି ଜାଗିଲେ ସାହିତ୍ୟ ରଣେ ।
ପଲ୍ଲୀକବି, ଶିଶୁକବି ସେ 'ସାମଲ' 'ବଳ' 'ଶିଳ୍ପୀ' 'ସଂସ୍କାରକ',
ମାତିଲେ ତାତିଲେ କମର କଷିଲେ ଜିତିଲେ ରଖିଲେ ଟେକ
ଧାଇଁ ଲକ୍ଷ୍ୟର ପଥେ,
ଆଗେଇ ଥିଲେ ସେ ସାଜି ସର୍ଦ୍ଦାର ଚଢ଼ି ଦୁର୍ବାର ରଥେ । ।।୧।।

ଦେଖା ଦେଇଥିଲା 'ଉଁରୁ ପରବତେ' ଡ଼ାମରାକାଉର ଛଟା
'ରୋଷେଇଘର'ର ମା'ଙ୍କ ଖରଡ଼ା ଶାଗ ଓ ବେସରବଟା ।
ବଲମ ନ ଧରି କଲମ ମୁନରେ କେତେ ଥିଲା ତାଙ୍କ ବଳ,
ଜାତିର ଆଖିରେ ଦେଖାଇ ଥିଲେ ଟି 'ନନ୍ଦ ସାମଲ' 'ବଳ' ।
ହୋଇ ଭାବ ଗଦଗଦ,
ଲେଖୁଥିଲେ ଯାହା ଦେଖୁ ଥିଲେ ତାହା 'ବିରୂପା'-'ଜଟିଆକୁଦ' । ।।୨।।

ଆହୁରି ବି ଅଛି ବହୁ ସ୍ମୃତି ଜଡ଼ି ଅଶିଳା ଭୁଲୁକା ବାଟେ,
କୃଷ୍ଣଦାସପୁର, ମେରିପୁର ଆଦି ରାହାଳ ରୁକୁଟି ପାଟେ ।
ମାଣ୍ଡୁକା ସହ ସେ ମହିପୁର ଯେ ନାନପୁର କୁସୁପୁର,
ପାଖା ପାଖି ଦିଶେ ସେ ମୂଳବସନ୍ତ ବହୁଗୁଣେ ଗୁଣୁପୁର ।
ବାଗ୍ମୀ ସଂସ୍କାରକ ଶିଳ୍ପୀ
ଓଡ଼ିଆ ଜାତିର ଗୁରୁ ଗୌରବ ରଖିଗଲେ କେତେ କଳ୍ପି । ।।୩।।

ପ୍ରକୃତି ସୁଷମା ଅତି ଅନୁପମା ଏଇ ବିରୁପାର କୂଳେ
ମଳୟ ଆକୁଳ ଚମ୍ପା ବକୁଳ ଧାରି ଧାରି ନାରିକେଳେ
ସାରି ସାରି ବର ଓସ୍ତ ଅଶୋକ କମ୍ର-ରସାଳ କୋଳ
ଭାରି ଭାରି ଶୋଭା କୃଷ୍ଣଚୂଡ଼ାରେ ହଳଦିବସନ୍ତ ଖେଳ
ମେଘ ମହ୍ଲାର ରାତି,
ସ୍ନିଗ୍ଧ ଶୀତଳ ଶରଦ ଆକାଶ ଶୀତ ବି ଥରାଏ ଛାତି । ।।୪।।

ବିରୂପା ବିହରୀ ସଇସୁନା ଗୋରୀ ଯୁବା ମନ କରି ଚୋରୀ,
ଗୋରା ମୁହେଁ ଖେଳି ଚୋରା ଚଇତାଳି ଡୋରା ରୂପ ଉଠେ ଝଳି,
କୁରୁ କୁରୁ ହସି ବୁଣି ବୁଣି ଯାଏ ଯୋଷା ଖୋଷା ଫୁଲ ବାସ,
ଅମାନିଆ ବାତ କରେ ଉତ୍ପାତ ଉଡ଼ାଇ ଅଙ୍ଗୁ ବାସ ।
କଳପି ଥିଲା ସେ ଯାରେ
ଝରି ଝରି ପଡ଼େ ସରି ସରି ଲାଜେ ଚାହିଁ ମଦାଳସୀ ତାରେ । ।।୫।।
ତେବେ ବି କହେ ମୁଁ ସଂସ୍କୃତି ନାମେ ଅପସଂସ୍କୃତି ବରି
ଓଡ଼ିଆ ଜାତିର ଗୁରୁ ଗୌରବ ଦିଅ ନା ଚରଣେ ଦଳି ।
ରଖି ସ୍ୱାଭିମାନ, ହୁଅ ଗରିୟାନ ନ ପାଶୋରି ଶାଳିନତା,
ଏଇ ବିରୂପାର ଜଳେ ଧୋଇ ଦିଅ ଅନ୍ତର ଆବିଳତା ।
ଅନାବିଳ ମନ ତଳେ,
ନ କରି ଶୋଚନା ତୋଳ ମୂର୍ଚ୍ଛନା ଭାବ ଦିଆନିଆ ଭୋଳେ ।
ବିରୂପାର କଳ କଲ୍ଲୋଳ ଖେଳି ମିଶାଅ ଛାତିରେ ଛାତି,
ଛିନ୍ନ କରନା ପ୍ରୀତି-ବନ୍ଧନ ଏ ଯେ ବିଷୁବର ରାତି । ।। ❑❑❑

ଧାର ପୁର, ମାହାଙ୍ଗା, କଟକ

# ଗୁରୁ ପ୍ରଣାମ

**ନିକୁଂଜ ଜେନା**

ଏହା ଭିତରେ ଦୁଇଟି ବର୍ଷ ଅତିବାହିତ ହୋଇଗଲାଣି – ନନ୍ଦ କିଶୋର ସାମଲଙ୍କ ତିରୋଧାନ। ଏମିତି ଗଡି ଚାଲିବ ବର୍ଷ ପରେ ବର୍ଷ। କିନ୍ତୁ କବି ନନ୍ଦ କିଶୋରଙ୍କର ସ୍ମୃତି ସେମିତି ରହିଥିବ ଅମ୍ଳାନ ତାଙ୍କର ଅଗଣିତ ଛାତ୍ରଛାତ୍ରୀ, ବଂଧୁ ଏବଂ ବୃହତ୍ତର ପାଠକ ମହଲରେ। କାବ୍ୟିକ ପ୍ରତିଭାକୁ ପ୍ରତିହତ କରିପାରେନା କାଳ। ତାର କରାଳ ଛାୟା କେବଳ ଚଳ ଚଂଚଳ ଶରୀରକୁ ଅଦୃଶ୍ୟ କରିଦିଏ।

ପ୍ରତିଭାଧର କବି ନନ୍ଦ କିଶୋର କେବଳ ଯେ ଥିଲେ କବି, ତାହା ତାଙ୍କର ଯଥେଷ୍ଟ ପରିଚୟ ନୁହେଁ, ସେଥିରେ ଜଣେ ମଣିଷ ପରି ମଣିଷ, ଦରଦୀ ବଂଧୁ, ଆଦର୍ଶ ଶିକ୍ଷକ, ସ୍ନେହୀ, ଛାତ୍ର ବତ୍ସଳ, ଅମାୟିକ, ନମ୍ର ଏବଂ ସର୍ବୋପରି ପ୍ରାଣୋଚ୍ଛଳ ବ୍ୟକ୍ତିତ୍ୱ। କବି ପ୍ରଥମେ ମଣିଷ। ତା'ପରେ କବି। ଯଦି ମଣିଷ ଭାବରେ କବିର ମର୍ଯ୍ୟାଦା, ସ୍ୱାଭିମାନ, ଆଂତରିକତା, ସହୃଦୟତା ଇତ୍ୟାଦି ମାନବିକ ଗୁଣଗୁଡିକ ନଥାଏ, ତେବେ କବି ଭାବରେ ସେ ଅନ୍ୟମାନଙ୍କୁ ପ୍ରଭାବିତ କରିବ କିପରି ?

ଗଦା ଗଦା କବିତା ଲେଖି କେହି କେବେ କବି ହୋଇ ପାରେନା। କେତୋଟି ମାତ୍ର କବିତା ଲେଖି କବି ହେବାର ସୌଭାଗ୍ୟ କେବଳ ପ୍ରକୃତ କବିର ଥାଏ। ଏହା ମଧ୍ୟ ସେହିଭଳି ଭାବେ ପ୍ରଯୁଜ୍ୟ ଗଳ୍ପ, ଉପନ୍ୟାସ, ପ୍ରବଂଧ ଏବଂ ସାହିତ୍ୟର ଅନ୍ୟାନ୍ୟ ବିଭାଗରେ। ଏଠାରେ ଦୃଷ୍ଟାନ୍ତ ଦେବା ନିଷ୍ପ୍ରୟୋଜନ।

କବି ନନ୍ଦକିଶୋରଙ୍କର କବିତା ପ୍ରାଣକୁ ଛୁଇଁଯାଏ। ହୃଦୟକୁ ଗଭୀର ଭାବେ ସ୍ପର୍ଶ କରେ। ନିତିଦିନିଆ ଘଟଣା, ଦୈନନ୍ଦିନ ଜୀବନଧାରାରେ ଅନେକ ଛୋଟ ଛୋଟ ଘଟଣା ଯାହା ସାଧାରଣ ନଜରରେ ଗତାନୁଗତିକ ଭାବେ ରହିଯାଇଥାଏ, ତାହାକୁ କବି ଏକ ନୂତନ ଦୃଷ୍ଟିଭଙ୍ଗୀରେ ଦେଖେ, ଯେଉଁଠି ଥାଏ ଏକ ମାନବିକ ସମ୍ବେଦନା। ତାର ପ୍ରଭାବ ହୁଏ ଅତ୍ୟନ୍ତ ଗଭୀର। ସେହିପରି ସରଳ, ସାବଲୀଳ କାବ୍ୟ କବିତାର ସ୍ରଷ୍ଟା ଥିଲେ ନନ୍ଦକିଶୋର। ରାଜନୀତି ଠାରୁ ନିଜକୁ ସଦାସର୍ବଦା ଦୂରେଇ ରଖୁଥିବା ଏକ ସ୍ୱାଭିମାନୀ ଆଦର୍ଶ ଶିକ୍ଷକ।

ଏହି ଲେଖକ ଥିଲା କବି ନନ୍ଦକିଶୋରଙ୍କର ଅଗଣିତ ଛାତ୍ରଛାତ୍ରୀମାନଙ୍କ ମଧ୍ୟରୁ ଜଣେ। ଛାତ୍ରାବସ୍ଥାରୁ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ତାଙ୍କ ସହ ସଂପର୍କ ଯୋଡ଼ିଥିବା ତାଙ୍କର ଜଣେ ଶ୍ରଦ୍ଧେୟ ଛାତ୍ର ଏବଂ କାବ୍ୟ କବିତାର ବିମୁଗ୍ଧ ପାଠକ।

ନନ୍ଦ ସାର୍ କେବଳ ନନ୍ଦକିଶୋର ବିଦ୍ୟାମନ୍ଦିରରେ ସାହିତ୍ୟ ଶିକ୍ଷକ ନଥିଲେ (ଯେଉଁ ଶିକ୍ଷାନୁଷ୍ଠାନରେ ସେ ଅନେକ ଦଶନ୍ଧି ଶିକ୍ଷାଦାନରେ ନିଜକୁ ନିୟୋଜିତ ରଖିଥିଲେ)।

ସେ ଥିଲେ ଜନ୍ମମାଟି କୁସୁପୁର ଗାଁର ସମସ୍ତଙ୍କର ପ୍ରିୟ ନନ୍ଦ ସାର।

ତାଙ୍କ ପ୍ରତି ସମସ୍ତଙ୍କର ଥିଲା ସମ୍ମାନବୋଧ। ସବୁବେଳେ ହସ ହସ ମୁହଁ। କବି ଭାବରେ ବାରି ହୋଇ ପଡନ୍ତି ଦୂରରୁ। ଛାତ୍ରଛାତ୍ରୀ ସହକର୍ମୀ, ବଂଧୁ, ଗ୍ରାମବାସୀ, ଚିହ୍ନା ଅଚିହ୍ନା ସମସ୍ତଙ୍କର ସେ ଯେପରି ନିଜର!

କୁସୁପୁର ମାଟିର ଦୁଇ ବରପୁତ୍ର ପଲ୍ଲୀ କବି ନନ୍ଦ କିଶୋର ଏବଂ ଶିକ୍ଷାଗୁରୁ ବିଦ୍ୟାଧରଙ୍କ ଉପରେ ତାଙ୍କର ନିଜସ୍ୱ କବିତା ସହ ପ୍ରସଂଗ କ୍ରମେ ଅନ୍ୟାନ୍ୟ କବିମାନଙ୍କର କବିତାକୁ ସେ ଯେପରି ଆବୃତି କରିଥାନ୍ତି, ତାର ପଟାନ୍ତର ନାହିଁ।

କବିତା ଲେଖିବା ସହ ଭାବମୟ ଉପସ୍ଥାପନା ମଧ୍ୟ ଅନ୍ୟ ଏକ କଳା ଯେଉଁଥିରେ କବି ନନ୍ଦକିଶୋର ଥିଲେ ଧୂରୀଣ।

ସତୁରୀ ଦଶକରେ ଅନେକ ନାଟକ, ଗୀତିନାଟ୍ୟ, ଏକାଂକିକା ଏବଂ କେତେକ ପୌରାଣିକ ବିଷୟବସ୍ତୁ ଆଧାରରେ ତାଙ୍କର ନାଟକ ସବୁ ସେତେବେଳେ ବିଦ୍ୟାଳୟ ପ୍ରାଙ୍ଗଣରେ ମଞ୍ଚସ୍ଥ ହେଉଥିଲା। ସେ ସବୁର ଶବ୍ଦ ସଂଯୋଜନା ଓ ସାଂଗିତିକତାରେ ଯେ କେହି ମୁଗ୍ଧ ହୋଇଯାଉଥିଲା।

କ୍ଲାସରେ ଶିକ୍ଷାଦାନ ପ୍ରଣାଳୀ ଥିଲା ତାଙ୍କର ନିଜସ୍ୱ। ସାହିତ୍ୟ ସାର୍ ଭାବରେ ବିଦ୍ୟାଳୟରେ ତାଙ୍କର ଯଥେଷ୍ଟ ସୁନାମ ଥିଲା। କବିତା ହେଉ କିମ୍ବା ପ୍ରବଂଧ ହେଉ, ଗୋଟିଏ ଗୋଟିଏ ଶବ୍ଦ ଏବଂ ବାକ୍ୟରେ ଏକ ଘଣ୍ଟାର ଏକ ପିରିୟଡ ଯେ କିପରି ଚାଲିଯାଏ, ତାହା ତାଙ୍କର ଯେ କୌଣସି ଛାତ୍ରଛାତ୍ରୀଙ୍କୁ ପଚାରିଲେ ସେ କହିପାରିବେ। ଜ୍ଞାନର ଯେମିତି ସୀମା ସରହଦ ନାହିଁ!!! ବିଭିନ୍ନ ପ୍ରସଂଗର ଅବତାରଣା ବିଭିନ୍ନ କବିଙ୍କର କବିତା ପଂକ୍ତିର ଆବୃତ୍ତି ସହ ନିଜର ଅନୁଭୂତି।

ଶିକ୍ଷାଦାନରେ ଆଗ୍ରହ, ତନ୍ମୟତା ଏବଂ ଅଂଗୀକାର ବୋଧ କେବଳ ନନ୍ଦ ସାରଙ୍କୁ ଯେ ଶୁଣିଛି ସେ ହିଁ ଜାଣେ। ସ୍ଥିର ନିସ୍ତବ୍ଧ ସମୁଦାୟ କ୍ଲସରୁମ୍। ଶେଷରେ ପିରିୟଡ ସରିଯିବାର ଠନ୍ ଠନ୍ ଶବ୍ଦ।

ଏହି ପ୍ରବଂଧରେ ଗୋଟିଏ ଦୃଷ୍ଟାନ୍ତ ଦେବାକୁ ଏହି ଲେଖକ ଉଚିତ ମନେ କରୁଛି। ନବମ ଶ୍ରେଣୀର ଷାଣ୍ମାଷିକ ପରୀକ୍ଷା ସରିଥାଏ। ନନ୍ଦ ସାର ଆମ କ୍ଲାସର ସାହିତ୍ୟ ଶିକ୍ଷକ ହିସାବରେ ସାହିତ୍ୟ ଖାତା ଦେଖି ସମସ୍ତଙ୍କୁ ନମ୍ବର ଦେଇ ସାରିଥାନ୍ତି। ପୂର୍ବ ଶ୍ରେଣୀମାନଙ୍କରେ ସାହିତ୍ୟରେ ସବୁ ଠାରୁ ଅଧିକ ନମ୍ବର ରଖୁଥିବା ଛାତ୍ର (ଲେଖକ ନିଜେ) ସାହିତ୍ୟରେ ୪୨ ନମ୍ବର ରଖିଥିବାର ଶୁଣିଲା। ସାର୍ ଖାତାରୁ ନମ୍ବର ଡାକି ଚାଲିଥାନ୍ତି ସମୁଦାୟ କ୍ଲାସର। ଜଣକ ପରେ ଜଣେ। ସେହି ଅନୁପାତରେ ଅନ୍ୟ ଛାତ୍ରମାନଙ୍କର ନମ୍ବର ମଧ୍ୟ କମ୍ ଥିଲା। କେତେକ ମଧ୍ୟ ସାହିତ୍ୟରେ ଫେଲ୍। ଆଶ୍ଚର୍ଯ୍ୟ ହେଲେ ସମସ୍ତେ। ସମସ୍ତଙ୍କ ନଜର ତାଙ୍କ ଆଡ଼େ।

ସାଧାରଣ ଭାବେ ସାହିତ୍ୟରେ ୬୦ ନମ୍ବରରୁ ଉର୍ଦ୍ଧ୍ୱ ଆଶା କରୁଥିବା ଏବଂ କ୍ଲାସରେ ପ୍ରଥମ ହେଉଥିବା ଛାତ୍ରର ଅବସ୍ଥା ଯଦି ଏଇଆ ତେବେ ଅନ୍ୟମାନଙ୍କ ଅବସ୍ଥା

କଣ ହୋଇଥିବ। କ୍ଲାସରେ କିଛି ସମୟ ପାଇଁ ଚାପା ଗୁଂଜରଣ ସୃଷ୍ଟି ହେଲା। କେତେକ ଛାତ୍ରଙ୍କୁ ଏହା ହସିବା ପାଇଁ ଖୋରାକ ଯୋଗାଇଲା। ସାର୍‌ଙ୍କୁ ପଚାରିବାର ସାହସ ନାହିଁ। ନନ୍ଦସାର୍ ତାଙ୍କ ଆଡୁ ଆରମ୍ଭ କଲେ – "ତୁମ୍ଭେମାନେ କଣ ଭାବୁଛ, ଭଲ ଭଲ ଶବ୍ଦ ଯୋଡି ଦେଲେ ସାହିତ୍ୟ ହୋଇଯାଏ ? ସାହିତ୍ୟ ଏକ ପ୍ରକାଶ ଭଂଗୀ। କଥିତ, ସରଳ ଭାଷା ଭାବକୁ ଠିକ୍ ଭାବେ ପ୍ରକାଶ କରିଥାଏ।" କାହାର ଜଣକର ଭାଷା ଠିକ୍ ନାହିଁ। ସେଦିନ ସାରା କ୍ଲାସ ଗାଳି ଶୁଣି ଚାଲିଲା। ନନ୍ଦ ସାର୍ ପୁଣି କହି ଚାଲିଲେ – "ପ୍ରତ୍ୟେକ ଶବ୍ଦ ସରଳ, ସୁଗଠିତ, ଏବଂ ବୋଧଗମ୍ୟ ହେବା ଜରୁରୀ। ସରଳ ଶବ୍ଦରେ ଯେଉଁ ଭାବ ରହିଥାଏ କ୍ଲିଷ୍ଟ ଶବ୍ଦରେ ତାହା ନଥାଏ।"

ତାଙ୍କର ଭାଷା ସେଦିନ ଏବଂ ରୋକ୍‌ଠୋକ୍ ଏବଂ ଅନୁଭୂତି ସମ୍ପନ୍ନ ଥିଲା, ଯାହାକୁ ସେ ନିଜ ବିଚାରରେ ଖୁବ୍ ଗୁରୁତ୍ୱର ସହ ଆରୋପ କରିଥିଲେ ସମସ୍ତଙ୍କ ଉପରେ।

ନନ୍ଦ ସାର୍‌ଙ୍କୁ ସେଦିନର ଛାତ୍ରମାନେ କିପରି ଗ୍ରହଣ କରିଥିବେ କେଜାଣି – ମୁଁ କିନ୍ତୁ ପୂର୍ଣ୍ଣ ମାତ୍ରାରେ ଗ୍ରହଣ କରିପାରି ନଥିଲି। ମୋ ଭିତରେ ଏ ପ୍ରଶ୍ନ ମୋତେ ବାରମ୍ବାର ଆନ୍ଦୋଳିତ କରୁଥିଲା। – ନନ୍ଦ ସାର ସିନା ଆମ ହାଇସ୍କୁଲରେ ଖାତା ଦେଖୁଛନ୍ତି – ସରଳ ଭାଷାରେ ଲେଖିଲେ ସେ ଭଲ ନମ୍ବର ଦେବେ। କିନ୍ତୁ ବୋର୍ଡ ପରୀକ୍ଷାରେ ? ଖାତା ଯେଉଁଠି ପଡ଼ିବ ସେ ପରୀକ୍ଷକଙ୍କର ଦୃଷ୍ଟିଭଂଗୀ କିପରି ଥିବ ?

ସାର୍‌ଙ୍କ କଥାକୁ ମୁଁ କେତେ ଦୂର ଛାତ୍ର ଜୀବନରେ ଗ୍ରହଣ କରିଥିଲି ତାହା ଜାଣିନଥିଲି। ତତ୍‌କାଳୀନ ବୋର୍ଡ ପରୀକ୍ଷାରେ ସାହିତ୍ୟରେ ୬୫ରୁ ଉର୍ଦ୍ଧ୍ୱ ନମ୍ବର ମୁଁ ରଖିଥିଲି। ସମ୍ଭବତଃ ସରଳ ଭାଷାରେ ମୋର ଉତ୍ତର ନଥିଲା। ସ୍ୱାଭାବିକ ଭାବରେ ମୁଁ ମୋ ଭାଷାରେ ଉତ୍ତର ଲେଖିଥିଲି।

ପରବର୍ତ୍ତୀ ସମୟରେ ଅଶୀ ଦଶକରେ ଓଡ଼ିଶାର ବିଶିଷ୍ଟ ସାହିତ୍ୟିକ ମାନଙ୍କ ସଂସ୍ପର୍ଶରେ ଆସିଲା ପରେ ଓଡ଼ିଶାର ସ୍ୱନାମଧନ୍ୟ ଔପନ୍ୟାସିକ ଜ୍ଞାନପୀଠ ପୁରସ୍କାର ଗୋପୀନାଥ ମହାନ୍ତିଙ୍କ ସହ ପ୍ରଶ୍ନୋତ୍ତର ସମୟରେ ସେ ଗୋଟିଏ କଥା ଉପରେ ସ୍ପଷ୍ଟ ଗୁରୁତ୍ୱ ଦେଇଥିଲେ। ତାଙ୍କ ସହ ଅନୌପଚାରିକ କଥାବାର୍ତ୍ତା ବେଳେ ତାଙ୍କର ଜ୍ଞାନପୀଠ ପୁରସ୍କାର ପ୍ରାପ୍ତ ଉପନ୍ୟାସ "ମାଟିମଟାଳ"ରେ ବ୍ୟବହୃତ ହୋଇଥିବା ସରଳ କଥିତଭାଷା ଏବଂ ଗୋଟିଏ ଶବ୍ଦ ଓ ବାକ୍ୟ ଉପରେ ସେ ଏଭଳି ଦର୍ଶନ ସମ୍ବଳିତ ତଥ୍ୟ ଉପସ୍ଥାପନ କଲେ ଯାହା ମୋତେ ସେତେବେଳେ ଆଶ୍ଚର୍ଯ୍ୟଚକିତ କରି ଦେଇଥିଲା।

ସେତେବେଳେ ସେ ମୋତେ କହିଥିଲେ – "Nikunja, Do you think literature is a ready made meal that is sorved to you. No. you have to arrange every tit bits - Cook and serve -"

ଗୋଟିଏ ଶବ୍ଦ ଚୟନ ଏବଂ ବାକ୍ୟରେ ଯେଉଁ ଭାବ ଏବଂ ଉଦ୍ଦେଶ୍ୟ ରଖି ଲେଖକ ପାଠକ ସମ୍ମୁଖରେ ଉପସ୍ଥାପନ କରିଥାଏ, ପାଠକ ତାକୁ ସେହିଭଳି ଭାବେ ବିଚାର କରିବା ଉଚିତ। ଏହା ଉପରକୁ ଯେତେ ସରଳ, ଭିତରେ ତାହା ଆଦୌ ନୁହେଁ।

ସେତେବେଳେ ମୁଁ ମୋର ପୂଜ୍ୟ ଗୁରୁଦେବ ନନ୍ଦ ସାରଙ୍କୁ ମନେ ପକାଉଥିଲି। ନନ୍ଦ ସାର୍ ଠିକ୍ ଏହି କଥା କହୁଥିଲେ।

କେତେ ବର୍ଷ ପୂର୍ବେ, ଆମ ଛାତ୍ର ଜୀବନରେ ନନ୍ଦ ସାର୍ ତାଙ୍କର ନିଜସ୍ୱ ଅଭିଜ୍ଞତା ଏବଂ ଦୂର ଦୃଷ୍ଟିରେ ସେତେବେଳେ ଯେଉଁ ବିଷୟରେ ଆମକୁ କ୍ଲାସରେ ଦିନେ ସଚେତନ କରାଇଥିଲେ, ଏହା କେବଳ ତାହାର ପୁନରାବୃତ୍ତି ମାତ୍ର ! ❑❑❑

୧୨୧/ଏ, ଜାଗମରା, ଖଣ୍ଡଗିରି, ଭୁବନେଶ୍ୱର

# ଅନନ୍ୟ କବି ନନ୍ଦ କିଶୋର

**ଶାନ୍ତନୁ କୁମାର ସାହୁ**

ବଳ ନୁହେଁ ତୁମେ ନନ୍ଦକିଶୋର ତୁମେ ହେ ସାମଲ ମଲ୍ଲ
ଉତ୍କଳ ମାଟିର ବନ୍ଦ୍ୟ କବିଙ୍କର ହେଲ ତୁମେ ସମତୁଲ।

ଲେଖନୀର ବାଣ କଲ କେତେ ଟାଣ କମ୍ପିଲା ସାରା ପ୍ରଦେଶ
କେତେ କେତେ ପୁରସ୍କାରେ ପୋତି ହୋଇ ରଖିଗଲ କେତେ ଯଶ।

ଛୋଟ ଛୁଆଙ୍କର ମନଛୁଆଁ ଗୀତ କବି ପ୍ରାଣୁ ପଡେ ଝରି
ଶୁଣି ସେ କବିତା ରଥି ମହାରଥି ହେଉଛନ୍ତି କେତେ ଝୁରି।

ଜନମିଲ ଏକ ଗ୍ରାମେ ସୁରୂପା ବିରୂପା କୂଳେ
ଲେଖିଗଲ ଅମୃତ ର ଗାଥା
କବିତା ମାଧ୍ୟମ କରି ଦେଶ ଦଶା ଲୋକ କରି
ଦୂର କଲ ପଲ୍ଲୀ କବି ବ୍ୟଥା।

ତୁମର ଗୀତିନାଟିକା ପାଣି କବି ଠୁଁ ଅଧିକା
ମଞ୍ଚ ପରେ ଭାବି ହୁଏ ସିନା
ସାହିତ୍ୟେ ରସ ଛନ୍ଦିଛ କବିତା କେତେ ବାନ୍ଧିଛ
ଆଜି ସବୁ ସିକ୍ତ ତୁମ ବିନା ॥ ❑❑❑

ଅଚ୍ୟୁତ ନିବାସ, କୁସୁପୁର

# ଶିଶୁ ସାହିତ୍ୟରେ ଜଣେ ପଲ୍ଲୀ କବି

ଡକ୍ଟର ମହେଶ୍ୱର ମହାନ୍ତି

ମାହାଙ୍ଗା ଅଞ୍ଚଳର କୁସୁପୁର ମାଟିର ଆଉ ଜଣେ ପଲ୍ଲୀକବି - ସେ ହେଉଛନ୍ତି ସ୍ୱର୍ଗତ ନନ୍ଦଶୋର ସାମଲ। ସେ ଇତିହାସ ପୃଷ୍ଠାକୁ ଚାଲିଯିବାର ଦୁଇ ବର୍ଷ ହୋଇଗଲାଣି, କିନ୍ତୁ ଓଡିଆ ଶିଶୁ ସାହିତ୍ୟର ଇତିହାସରେ ସେ ଅମର ହୋଇ ରହିବେ ଚିରକାଳ।

ଆଧୁନିକ କାଳର ବିଜ୍ଞାନ ଅଭିମୁଖୀ ସାହତ୍ୟକୁ ଛାଡି ଦେଲେ ଶିଶୁ ସାହିତ୍ୟ ଏ ଯାବତ ଅଧିକର ଭାବେ କେବଳ କଳ୍ପନା ଓ ଅତିକଳ୍ପନାକୁ ଆଧାର କରି ଗଢି ଉଠିଛି। ଶିଶୁ ଯେ କଳ୍ପନକୁ ଆଧାରକରି ଗଢି ଉଠିଛି। ଶିଶୁ ଯେ କଳ୍ପନା ପ୍ରିୟ ଏବଂ କଳ୍ପନାର ପକ୍ଷୀରାଜ ଘୋଡା, ବୁଢୀ ଅସୁରୁଣୀ ଓ ସାତ ଭାଇ ଚମ୍ପାଭଳି ଗଳ୍ପରୁ ପ୍ରଭୂତ ଆନନ୍ଦ ପାଇଥାଏ, ଏହା ସତ୍ୟ। କିନ୍ତୁ ଶିଶୁର ପ୍ରାତ୍ୟହିକ ପରିବେଶରୁ ସତ୍ୟ ଓ ବାସ୍ତବ ଘଟଣାକୁ ନେଇ ବେଶ କଳାତ୍ମକ ଭାବରେ ପରିବେଷଣ କରି ଶିଶୁର ମନୋରଞ୍ଜନ କରାଯାଇପାରେ, ଏ ଦିଗରେ ସ୍ୱର୍ଗତ ସାମଲ ଗୋଟିଏ ନୂତନ ଦିଗ ଉନ୍ମୋଚନ କରିଗଲେ। ଏଗୁଡିକରେ ମନୋରଞ୍ଜନ ସହିତ ଶିକ୍ଷାତ୍ମକ ଦିଗଟି ବିଶେଷ ଭାବେ ଉଲ୍ଲେଖଯୋଗ୍ୟ।

ସ୍ୱର୍ଗତ ସାମଲ ବୃତ୍ତିରେ ଥିଲେ ଶିକ୍ଷକ। ସେ ପ୍ରାୟ ୧୩ଖଣ୍ଡ କବିତା ପୁସ୍ତକ ପିଲାମାନଙ୍କ ପାଇଁ ରଚନା କରିଛନ୍ତି। ପ୍ରଥମ କବିତା ପୁସ୍ତକ 'ଗୁଣ୍ଡୁଚି ମୂଷାର ପିଠିରେ ଗାର' ୧୯୬୦ରେ ପ୍ରକାଶିତ ହୋଇଥିବା ସ୍ଥଳେ ସର୍ବଶେଷ ପୁସ୍ତକ 'ଅଜା ପଚାରିଲେ ଆଇକି' ୨୦୦୩ରେ ପ୍ରକାଶିତ ହୋଇଥିଲା। ଏଗୁଡିକ ମୁଖ୍ୟତଃ ପଲ୍ଲୀ କେନ୍ଦ୍ରିକ ଏବଂ ବାସ୍ତବାମୁଖୀ। ଗାଁ ପାଖର ବିରୂପା ନଈ, ଘର ପଛର ଟିକି ଗାଡିଆ ସେଥିରେ ମାଡିଥିବା ଚୁନି ଚୁନି କଅଁଳ କଳମ ଲତା, ତାଳବଣ, ବେଣା ପାଟ, କିଆ ଗୋହିରୀ, ରାତିରେ ପଣପଣ ଜୁଳୁଜୁଳା ପୋକଙ୍କ ସମାରୋହ, ମଦରଙ୍ଗା ଶାଗ, ନେଉଟିଆ ଶାଗ, ସଜନା ଛୁଇଁ, ଅରୁଆ ଜାଉ, ମଣ୍ଡା, ଏଣ୍ଡୁରି, ଚକୁଳି, କାକରା ଇତ୍ୟାଦି ଓଡିଆ ଘରର ସୁସ୍ୱାଦୁ ପିଠାପଣା ଅତ୍ୟନ୍ତ ଚିତ୍ତଗାହୀ ଭାବରେ ସେ ପରିବେଷଣ କରିଛନ୍ତି। ଏଗୁଡିକ କେବଳ ଶିଶୁ କାହିକି ବୟସ୍କମାନଙ୍କର ହୃଦୟକୁ ଆଲୋଡିତ କରିଥାଏ। ନିଜର ସ୍ମୃତିକୁ ଉଜ୍ଜୀବିତ କରିବାକୁ ଯାଇ ସେ ଲେଖିଛନ୍ତି -

"ଭାରି ଭଲ ଲାଗେ ମତେ ମୋ ଗାଁ
ଆଲୁଅ ପବନ ତାର
ଯୋଉଠି ରହିଲେ ଯୁଆଡେ ଗଲେ
ମନେପଡିଯାଏ ମୋର।

ମନେପଡେ ତାର ଟିକି ଗଡିଆ
କଅଁଳ କଳମ ନଟି,
ଟିକିଏ ଦୂରରେ ନୀଳ ପାହାଡ
ପାହାଡ ଝୁମୁକି ଝାଟି
ନାଳ ସେପାରିର ଧାନକିଆରୀ
ଏ ପାରିର ତାଳବଣ
ଗାଁ ତୋଟା ତଳେ କିଆ ଗୋହିର
ଜୁଳୁଜୁଳା ପଣ।''

ଏଗୁଡିକ କେବଳ କବିତା ଦୃଷ୍ଟିରୁ ରଚନା କରାଯାଇନାହିଁ, ଏଥି ମଧ୍ୟରେ ଆତ୍ମା ଅଛି, ଜୀବନ ଅଛି ଆବେଗ ଅଛି।

କବିଙ୍କ ରଚିତ ''ଆମ ଘରେ କିଆଁ ବଳଦ ନାହିଁ'' କବିତାଟି ବେଶ ହୃଦୟଗ୍ରାହୀ ତଥା ଭାବୋଦ୍ଦୀପକ। ଶିଶୁଟି ପର ଜନ୍ମରେ ଗୋଟିଏ ବଳଦ ହୋଇ ଜନ୍ମଗ୍ରହଣ କରିବାର ଅଭିଳାଷ ନିଜ ଆଇ ପାଖରେ ପ୍ରକାଶ କରିଛି। ଆଇ ଏ କଥାକୁ ନାପସନ୍ଦ କରନ୍ତେ ଶିଶୁଟିର ଯୁକ୍ତି ହେଉଛି –

''କାହିଁ କି ଆଇ
ବଳଦର କଣ ଜୀବନ ନାହିଁ ?
ଖଟି ଖାଉଚି
ବେଶ୍ ତ ଅଛି।
ବଳଦ କଅଣ ମିଛ କହୁଛି ?
ଚୋରି କରୁଚି ?
ପର ଧନ ନେଇ ଫାଙ୍କି ଦେଉଚି ?''

× × ×

ହେଲା ତ ହେଲା
ମଣିଷ ଅଧିକ କଅଣ କଲା ?
ସିଏ ଖାଇଲା
ଇଏ ଖାଇଲା
ଦିନ ଖସିଲା
ବଳଦ ମଲା
ମଣିଷ ମଲା
କାହାର ଏଥିରେ କଅଣ ଗଲା ?

ଶିଶୁ ସାହିତ୍ୟରେ ଏହା ଏକ ଅଭିନବ ଚିନ୍ତା। ଶିଶୁ ସାହିତ୍ୟରେ କୌଣସି ଉଚ୍ଚତର

ଚିନ୍ତା ନଥାଏ ବୋଲି କହି ଯେଉଁମାନେ ଏହାକୁ ଲଘୁ ଦୃଷ୍ଟିରେ ଦେଖନ୍ତି, ସେମାନେ ଏଇ ଭଳି କବିତାରୁ ନିଶ୍ଚେ ତାଙ୍କ ଯଥାର୍ଥ ଉତ୍ତର ପାଇପାରିବେ। ତାଙ୍କର ଏଇଭଳି ଅନ୍ୟ ଏକ ଭାବୋଦ୍ଦୀପକ କବିତା ହେଉଛି 'କାହିଁକି ମୁଁ ଜାଣେ ନାହିଁ।' ଗୋଟିଏ ବୁଢ଼ୀ ଗାଈର ଜୀବନ ଯନ୍ତ୍ରଣାକୁ ରୂପ ଦେବାକୁ ଯାଇ ସେ ଲେଖିଛନ୍ତି

''ମୋତେ ଯିଏ କଲା ଗାଈ
ତତେ ସିଏ ଦେଲା ମଣିଷ ଜୀବନ
କାହିଁକି ମୁଁ ଜାଣେ ନାହିଁ।
ଭଲ ଭଲ ଚିଜ ଖୋଇଲୁ ମୋତେ
ଦୁଧ ଦୁହିଁ ନେଲୁ ମୋଠଉଁ ଯେତେ
ନେଲୁ ବୋଲି କିଛି ଦେଲୁ
ମୋତେ କାହିଁ କିରେ ବୁଢ଼ୀ ବୟସରେ
ଆଜି ହଟହଟା କଲୁ।
ନେଇ ନାଇ ସାରି ଏଇଆ କଲୁ
ମାଟି ମୁଠେ ଦେଲୁ ନାହିଁ
କଂସେଇ ହାତକୁ ଧରେଇ ଦେଲୁ
ଆଶା କରିଥିଲି ମଣିଷ ପଣିଆ
ତୋ ଠୁଁ ପାଇବା ପାଇଁ।''

ଜୀବେ ଦୟା ସହିତ ଶିଶୁ ମନରେ ଏକ ପ୍ରଚ୍ଛନ୍ନ ବୈପ୍ଳବିକ ଭାବନା ଏଇ କବିତାରେ ପରିସ୍ଫୁଟ ହୋଇଛି। ଏଗୁଡିକ ଅତ୍ୟନ୍ତ ସତ୍ୟ ଏବଂ ବାସ୍ତବ। ବାସ୍ତବାନୁଭୂତିତା ଅନୁରଣିତ ଏଭଳି କବିତାଗୁଡିକ ବୟସ ନିର୍ବିଶେଷରେ ସବୁ ଶ୍ରେଣୀର ପାଠକଙ୍କର ମନକୁ ଯେ ଆନ୍ଦୋଳିତ କରିବ ଏଥିରେ ସନ୍ଦେହ ନାହିଁ। କବିତାରେ ବାସ୍ତବତାର ଅନ୍ୟ ଏକ ପ୍ରତିରୂପ ହେଉଛି 'ଅଜା ପଚାରିଲେ ଆଇକି' କବିତା ପୁସ୍ତକ।

ଏହାର ପ୍ରଥମ କବିତାଟି ହେଉଛି –

''ଅଜା ପଚାରିଲେ ଆଇକି
ସେ ଘରେ ତ କେହି ଗୋଟିଏ ନାହିଁ
ପଙ୍ଖାଟି ଘୁରୁଚି କାହିଁକି ?
ଟି. ଭି ବି ଲାଗିଛି ସେ ଘରେ
କେହିତ ଦେଖୁନ ଲାଗିଚି ଟି.ଭି
ତମେ ତ ବସିଛ ଏ ଘରେ।''

ଆଧୁନିକ ଜୀବନର ଏହା ଏକ ନିଖୁଣ ସତ୍ୟ। ଶିଶୁ କଣ ବୟସ୍କ କଣ ସମସ୍ତଙ୍କ ପାଇଁ ଏହା ଶିକ୍ଷଣୀୟ। କବିଙ୍କର ଅଧିକାଂଶ କବିତା ହେଉଛି ପଲ୍ଲୀଭିତ୍ତିକ ଏବଂ ସେଗୁଡ଼ିକରେ

ମୌଳିକ ଚିନ୍ତା ଓ ଚେତନାର ସ୍ପର୍ଶ ଅନୁଭୂତ ହୋଇଥାଏ । କେବଳ ସରଳ ପଦ ସଂଯୋଜନା ବା ସହଜ ମନୋରଞ୍ଜନ ଉଦ୍ଦେଶ୍ୟରେ ଏଗୁଡ଼ିକ ରଚିତ ହୋଇଥିବା ଭଳି ମନେ ହୁଏ ନାହିଁ । ଗୋଟିଏ ଦରିଦ୍ର ଗ୍ରାମ୍ୟ ବାଳକ ପାଇଁ ଅରୁଆ ଜାଉର ଅପୂର୍ବ ସ୍ୱାଦ, ଗ୍ରାମ୍ୟ ଜୀବନରେ ଛେନା ମଣ୍ଡାର ଆକର୍ଷଣ ପୁଣି ସେଇଭଳି ଅନ୍ୟ ଏକ ଦରିଦ୍ର ବାଳକର ମାତୃ ସମ୍ମୁଖରେ ଶପଥ ହୋଇଛି –

''ଜମି କିଣିବି<br>
ହଳିଆ ହେବି<br>
ପାଠ ପଢ଼ିବି<br>
ହଳ କରିବି<br>
ଜାଉ ପିଠା ହେବ, କେତେ ଖାଇବି ।''

ଏହି କବିତାଟିରେ ଦାରିଦ୍ର୍ୟ ପୀଡ଼ିତ ଜୀବନର ଚିତ୍ର ଯେତିକି ମାର୍ମିକ, ସରଳ, ନିରୀହ, ନିଷ୍କପଟ ଶିଶୁର ଆନ୍ଦୋଳିତ ପ୍ରାଣର ପରିପ୍ରକାଶ ସେତିକି ବିଶେଷତ୍ୱପୂର୍ଣ୍ଣ । ଶିଶୁ ସାହିତ୍ୟରେ ଏଭଳି ପରିକଳ୍ପନା ନିଃଶ୍ଚ ଅଭିନବ ।

ସ୍ୱର୍ଗତ ସାମଲଙ୍କର ପ୍ରକାଶିତ ଓ ଅପ୍ରକାଶିତ ଲେଖାକୁ ଏକତ୍ର କରି ଗ୍ରନ୍ଥାବଳୀ ଆକାରରେ ପ୍ରକାଶ କରିବା ପାଇଁ ତାଙ୍କ ଆତ୍ମଜମାନେ ଉଦ୍ୟମ କରୁଥିବା ଆନନ୍ଦର ବିଷୟ । ଏଇଟି କାର୍ଯ୍ୟକାରୀ ହେଲେ ନନ୍ଦ କିଶୋରଙ୍କ ପ୍ରତିଭାର ଆକଳନ ଓ ଆଲୋଚନା ସହଜ ହେବ । ଆଜି ତାଙ୍କର ୨ୟ ଶ୍ରାଦ୍ଧ ବାର୍ଷିକୀ ଅବସରରେ ସେଇ ସ୍ୱର୍ଗତ ପ୍ରତିଭା ପ୍ରତି ମୋର ପ୍ରଣାମ । ❑❑❑

କେନ୍ଦୁଝର କଲୋନୀ, କଟକ

# NANDA SIR - HUMBLE & HUMANE

**Capt. D.K. Mohanty**

Nanda Kishore Samal's contribution to the Oriya literature is well known. He stood like a colossus among his contemporaries. Though he is widely known as a poet & writer of the literature for children but his writings are popular with readers of all ages. Simplicity was his hull mark. It has differentiated him from other writers and poets and placed him in the forefront. He was his own guide and critic. He always tried to compete with himself. His originality was his strength. The poem "AMA GHARA" when released was read and sung by both children & their grand parents marking the beginning of a new era in Oriya literature. Some people knowingly or unknowingly try to draw a comparison between the "Shishu Kabi" & "Pallee Kabi". It may not fair to any of them. Though their names are identical except their titles both have left their footprints in the Oriya literature on their own rights. Kusupur village is fortunate to be the birth place of both the prominent poets and some of us are fortunate to be associated with them. There are few who are living to speak of their experience with the "Pallee Kabi". But as a student and an admirer of Nanda Sir it is worthwhile to narrate two incidents seen and heard which speak the other side of the poet, a person so humble and humane.

Being fortunate to be the son of an eminent sculptor and a student of an eminent poet I had the privilege to witness one incident where the poet revealed his soul praising sculptors & painters and placing them above the poets. It was an autumn morning, Nanda Sir reached our house at 7 AM covering a distance of nearly 2 kms from his house by bicycle. His mission was to meet Sri Bipra Charan Mohanty the celebrated sculptor & painter who had come to his native village Nanpur during the Puja Holidays and to request him to prepare a cover design for his maiden poetry collections "GUNDUCHI MUSHARA PITHIRE

GARA". During the course of discussion he revealed that he was waiting for the past 3 months to meet him for the work. His argument was that when there is an eminent artist in the neighbouring village why he should go to Cuttack or other places. It was one of the happiest moments for me to see the efforts of my teacher and my father to give birth to a book depicting poetic excellence. After hearing all details Sri Mohanty sat down and the job was completed in less than a hour. The sketch of a squirrel (Gunduchi Musha) a pencil painting was so fascinating that Nanda Sir could not control his emotions and showered praises for the artist . He was so obsessed with the painting that he had preserved it till his death. Once he showed me the painting and asked me why it was so dear to him. Without understanding the humble mind I replied that this could be his first love being his maiden work. I was wrong. He commented that it is a masterpiece, the work of a great artist created out of love and affection. He continued with his usual forceful way that the sculptors and artists are much superior to the poets and writers. His argument was as simple as his writings & thoughts. He carried on stating that to understand the idea of a poet or writer a common man has to read the whole poem, essay, story or novel etc. With his usual smile he stated that after all that the man may or may not understand the theme or the message of the poet or writer wants to communicate. There could be different versions depending on the celebraty status of the poet or writer or understanding of the person. However, a common man may not have difficulty in recognizing a statue or understanding a painting. Such thoughts could only come to the mind of a person of the stature of Nanda Sir. It not only reflected his greatness and humbleness but also his concern for fellow human beings.

He was never his own admirer. Rather he was his biggest critic. The above virtue has probably made him different from others and taken him to great heights. For others good deeds he was never in short of words of praise. Even though he was one of the most popular and respected teachers teaching in higher classes he had tremendous regards

for teachers of lower classes, specially the lower primary classes. Those days there were no K.G. classes. Such of his thinking once became a topic of our debate. The matter was put to rest, after he narrated his experience while undergoing training to become a trained teacher. During training, in one occasion, he was allotted to teach Geography in Cl-V and one of his friends was to take class in standard-II. When his friend requested him to swap the classes he gladly agreed little knowing that it was much more difficult to teach students of lower classes. He realised the same as soon as he entered the class. Students were not disciplined and busy doing their own work. His shouts did not yield any result. He had to teach the students an essay on the cow. To attract their attention he showed them a painting of a cow. Very soon he realized his mistake as all the students came running towards him, some of them climbing on the table to snatch the painting and others pulling him from all directions. He was helpless and there was utter chaos. In the mean time, the inspector had entered the class. The whole incident was narrated by him with his usual humorous ways and language. To our query how much mark was given to him towards assessment for that class, he said with pride that he got 8 out of 10 and concluded, that is why he always pays respect and praises the teachers teaching in lower classes especially in the lower primary classes. This shows his humbleness and humanitarian qualities.

It will be foolish to comment on the depth of his knowledge in the Oriya literature. It was as vast and as deep as the Pacific Ocean. But his life was not all about Oriya literature. His personal experience and respect for the fellow human beings is something which may not be known to many. Let his ideals and thoughts guide the proud and selfish like a Pole Star of the Northen Sky guiding those who loose their directions in the darkness.

Let us salute the great soul. ❑❑❑

Deputy Conservator, Paradip Port Trust

Paradip, Orissa - 75 41 42.

# ଅପାଶୋରା ମୁହୂର୍ତ୍ତ

ଏକାଦଶୀ ସେଠୀ

ଆମ ଅଞ୍ଚଳର ସମସ୍ତ ସାରସ୍ୱତ ଉତ୍ସବମାନଙ୍କରେ ଧୋତି କାମିଜ ପିନ୍ଧା ଅତ୍ୟନ୍ତ ସାଧାସିଧା ଅନାକର୍ଷଣୀୟ ଚେହେରା – କିନ୍ତୁ ସଦା ହସ ହସ ମୁହଁର ସେହି ସ୍ନେହୀ ମଣିଷଟିଏ ଆଉ ଆମ ଗହଣରେ ନାହାଁନ୍ତି । କଥା କଥାରେ ସମସ୍ତଙ୍କୁ ଆପଣେଇ ନେବାର ଅଲୌକିକ ଶକ୍ତି ତାଙ୍କ ନିକଟରେ ଥିଲା । ଅସଂଖ୍ୟ କବିତା, ନାଟକ, ଗୀତିକବିତା ଓ ରୂପକ ଲେଖି ସେ ଓଡ଼ିଆ ସାରସ୍ୱତ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି । ଆମ ଅଞ୍ଚଳର ଆବାଳ ବୃଦ୍ଧବନିତା ସମସ୍ତଙ୍କର ସେ ଥିଲେ ନନ୍ଦ ସାର୍ । ମୁଁ ତାଙ୍କର ଛାତ୍ର ଭାବରେ ନୁହେଁ, ତାଙ୍କର ସାହିତ୍ୟିକ ମୂଲ୍ୟବୋଧକୁ ଗ୍ରହଣ କରି ତାଙ୍କୁ ସମ୍ମାନ ଜଣାଏ । ତାଙ୍କ ସହ ବିତିଥିବା ଅନେକ ଅପାଶୋରା ମୁହୂର୍ତ୍ତ ମଧ୍ୟରୁ ଗୋଟିଏ ମୁହୂର୍ତ୍ତର କଥା ମୁଁ କହୁଛି ।

ତାଙ୍କ ରଚିତ 'ମୋତେ ଯେତେବେଳେ ଦଶ ବରଷ' ପୁସ୍ତକ ପାଇଁ ସେ ୧୯୯୨ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲେ । ତାଙ୍କର ଏହି ସଫଳତା ପାଇଁ ସେ ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ସମ୍ବର୍ଦ୍ଧନା ଲାଭ କରିଥିଲେ । ଶ୍ରୀଯୁକ୍ତ ସାମଲଙ୍କୁ 'ମାହାଙ୍ଗା–ବଡ଼ଚଣା ସାହିତ୍ୟ ଓ ସଂସ୍କୃତି ପରିଷଦ' ଦ୍ୱାରା ଏକ ସ୍ୱତନ୍ତ୍ର ଉତ୍ସବରେ ଭବ୍ୟ ସମ୍ବର୍ଦ୍ଧନା ପ୍ରଦାନ କରାଯାଇଥିଲା । ଅନୁଷ୍ଠାନର କାର୍ଯ୍ୟକାରୀ ସମ୍ପାଦକ ଭାବରେ ମୋ ଉପରେ ଦାୟିତ୍ୱ ଥିଲା – କବିଙ୍କୁ ତାଙ୍କ ବାସଗୃହ ବର୍ଷା ନିଳୟମରୁ ସାଦରେ ପାଛୋଟି ନେବା ପାଇଁ । ସଭାକାର୍ଯ୍ୟର ଆୟୋଜନ କରାଯାଇଥାଏ ମାହାଙ୍ଗାସ୍ଥ ପଞ୍ଚାୟତ ହାଇସ୍କୁଲ, ମଣିଜୋରୀ ଠାରେ । ସଭାମଞ୍ଚରେ ଥାଆନ୍ତି ତତ୍‌କାଳୀନ ମନ୍ତ୍ରୀ ସେକ୍ ମତଲୁବ୍ ଅଲ୍ଲି, ଶିଶୁ ସାହିତ୍ୟିକ ଡକ୍ଟର ମହେଶ୍ୱର ମହାନ୍ତି, ଗୀତିକାର କ୍ଷୀରୋଦ ଚନ୍ଦ୍ର ପୋଥାଳ, ରସରାଜ ଡକ୍ଟର କୁଳମଣି ମହାପାତ୍ର, ଶିକ୍ଷାବିତ୍ ରବୀନ୍ଦ୍ର କୁମାର ସାହୁ ଏବଂ ସମାଜସେବୀ ଶ୍ରୀଯୁକ୍ତ ବଳରାମ ସାହୁ । ସମ୍ବର୍ଦ୍ଧନା ସଭାର ଅୟମାରମ୍ଭରେ ମୁଁ ମାନପତ୍ର ପାଠକଲା ପରେ – ଶହ ଶହ ଫୁଲମାଳ ଲମ୍ବି ଯାଇଥିଲା କବିଙ୍କ ଗଳାରେ । ଦୂରରେ ଥାଇ ଦର୍ଶକ କହୁଥିଲେ 'ନନ୍ଦବଳା ନନ୍ଦକିଶୋରଙ୍କର ଏହା କଣ ଫୁଲ ବେଶ ।'

ସମ୍ବର୍ଦ୍ଧନାର ପ୍ରତ୍ୟୁତ୍ତର ଦେଇ କବିଙ୍କ ଆଖିରୁ ସେଦିନ ଆନନ୍ଦର ଅଶ୍ରୁ ବହି ଯାଇଥିଲା । ସଭା ପରେ ମୁଁ ସସମ୍ମାନେ ତାଙ୍କୁ ପୁଣି ଘର ପର୍ଯ୍ୟନ୍ତ ଛାଡ଼ିବାକୁ ଆସିଥିଲି । ବିଦାୟ ନେଲାବେଳେ ସେ ମୋ ମୁଣ୍ଡରେ ହାତମାରି ଆଶୀର୍ବାଦ ଦେଇଥିଲେ । ସେ ସେତେବେଳେ ଗାଇଥିଲେ – 'ଫୁଲଟିଏ ମତେ କରିଦିଅ ପ୍ରଭୁ, ତୁମରି ଚରଣ ପାଇଁ ।' ସେ କଥା ଆଜି ମୋର ମନେ ପଡିଲେ ଦୁଃଖର ଅଶ୍ରୁ ବହି ଯାଉଛି । ❑❑❑

ନବପ୍ରତିଭା ସାହିତ୍ୟ ସଂଗଠନ, ବାଲିଚନ୍ଦ୍ରପୁର

# A PERSON WHO WOULD TOUCH ONCE HEART

**Sanghamitra Jena**

My association with Shri Nanda Kishore Samal dates back to 1975 when I was a performing child artists of Doordarshan Kendra. It was for his poem "Ama Ghara" that our performance was selected as the best childrens' programme of the year at New Delhi. In fact his writings are so prolific, lucid and heart touching that we did not have to do much other than narrate these lines. Such is the impact of his writings. He is rightly a man of the soil, whose literature gives the smell of wet earth of a rainy evening, the swaying of coconut trees, of a hot, boozy afternoon and sometimes tries of hunger of a small child in the wet hours of the morning.....

Strange are the ways of destiny. I had the chance to meet the great poet in person in December-89 just after my marriage to Dr. Basant Kishore Jena who introduced him as his teacher. I was exuberant because I relived my child hood memory and was delighted to see the poet right in front of me. I was shown other aspect of his personality that of a sincere teacher and a very very simple hearted man.

Indeed, Sir was a person who would touch once heart by going a smile and showing how much he cared. In these modern stresssful times it is difficult to get a genuine, heartwarming, dedicated and sincere person like him. The throughts were much ahead of his times. He was very progressive and realistic. I considir myself extremely lucky to have been associated with him. Such great man do not die. They live in us, amongst us and within us through their thoughts, ideas and influence the generation to flow.



Lecture in Sociology,
R.D. Women's College, BBSR

# THE PIED PIER OF ORISSA

**Jachindra Rout**

Aei ti Amara Fula Bagicha
Tale Padichhi Ki Ghasa Galicha
Udi Udi Ase parajapati
Taraka ati, Aet ti bule
Fulare Jhule, Kalasi Ani/Fula Gachha mule diea mun pani

Standing at the door jam of this years old creation, one can look deep in to the entire literary activities of Nanda Kishore Samal.

Mr. Samal is like a diamond in darkness and with a ray of light, it dazzles and picks the eyes. It is how we see and understand his knowledge of flash of flash of light in our mind of darkness. It is very different indeed. After all, a diamond is a diamond forever. Writing poetry is a way of life to some or a pleasant occasional past time to others. But the habit of poetry has something, in common with the habit of prayer to Mr. samal.

Mr. Samal's poems may be seen in a contemporary light as poems that use language and rhythm freshly and with inspiration. He plays with his readers with words, ideas, thoughts and emotions. In one of his poems he tells

Neje, Sutura Rakhibi Nijaku/Nija Bichhana, Soiba Sejaku
Khara, Padu Padunu Uthibi/Teke, Badibagichare Khatibi (Ghara)

All the collections are characterized by a powerful tension between placement and dislocation presence and humanity. The sharp line of his poems have a richness of economy making each word tell, and the exactness with which the measures both the instant and its echo is enhanced by a fine structural sense with excessive poems taking up the themes from the one before. His vision encompasses the traditional and the contemporary with equal precision.

Many of the poems allude to Child's thought, the future luck, education and thought, and are clearly the work of a writer who is highly adept at listening and looking. We can sense the keen observations of the poet in one of his poems :

Aei Ghara Tire Janama mora
Ghara Nuhen Eia Saraga Pura

Aei Ghare Amme Akathi Thaua
Akathi Khauu/Akathi Hasu
Budhi Ma Pase/Gapa Sunu sunu nida Ti ase

Here is poet who philosophizes about life, love, culture and society, the theme which occupy his world are the natures of truth, love the instances of experience and their possible relation to some their more, such as in the poem :

Aei Ghare Ma Pariba Kate/Besara Bate, Jaie Ragade
Saga Kharade/Gadhai pitha
Arisha Kakara Ah! Kimitha

Nanda Kishore Samal commonly calls up a picture of the grand old man who had the Magnificent presence of a heroic band the uniquely famous poet laureate who had became a National Institution, the uncrowned king of Orissa and children's literature.

The mixture of high sprit and philosophizing all his literary creations might suggest only a serious and bookish adolescence.

Mr. Samal's preoccupation with niceties of art and accuracy of description was perhaps one way of escape from the inward and outward conflicts and frustrations that tormented him, in a world of dissolving belief and values, universe of overwhelming vastness art and nature were at least solid sure.

Mr. Samal was much more than a polished mirror of his age and time he was in the main a great artist, very often a great poet. It is not easy to catalogue his deficiencies, but it wiser to enjoy to the many things he did superbly. Beneath the beautiful surface there are revelations of the dark abyss in which the poet's deepest self lived.

Totare mun sukhila patara/Sukhi sukhi salita heleni
Mote tume gotei nia re/Mun Hebi Badhia Jaleni

He looks at the world from an impressive variety of angles, making the most of his alert intelligence, his instinct for the quirky and his detection of the phony. There is restlessness about his works, refusal to take things down which sometimes comes to the surface. His poems show their humanity as the sub lime ethical and spiritual act that is manifested through the qualities such as love, loyalty, peace, honesty, goodness, truth, beauty, innocence, purity, respect, compassion, universal brotherhoodness and friendship among people.

Mr. Samal is a poet of reforms and self-cultivation. In all his

poems, that he has composed for children, he wants to cultivate the nobleness of heart, pure reason, power and pelf readiness to upliftment of mankind, mastery over mind and passions, selfishness and purposeful living, certain negative forces within 'the self' which leads to its gradual disintegration are to be guarded against, he is cursing others, acting sinfully, blaming others for one's problems createdby the inflated ego and betting malice, craze for blurring and giving opinions without caring to listen to others with patience, tension or depression, remorse or ingratitude, immunity to erring suspicion, hatred worst enemy of human being which lead to complete disintegration of the individual and hence to be warded off deliberately.

Optimistic and humane vision of life is the key theme obsession of Nanda Samal's poetry. He sings highly and magnificently about men, life and nature, which are god's creations. He finds the essence of life and the world in the natural phenomenon, which possesses hearts given by god. Those hearts emit magnificently positive energy towards the human process. Also through the poetic organism the vibrations of the hearts are dominating, as the gift of god.

I find it difficult to write a short note, I find it more difficult not to write about the person who was a friend, philosopher and guide to my poetic sensibility. An uncommon visual, a strange meeting, a sparse conversation, a queer study room provoke me emotionally and I can't res till release it through a brief note, whatever its worth.



Sahaspur College, Balichandrapur, Jajpur

*With Best Compliments from :*

**Er. Sangram Keshari Mishra**

(Surveyor & Loss Assessor)

**C/o Muktikanta Mishra**
**Malha Sahi, Jobra, Cuttack**

Ph : (0671) 2649683
Mob : 9437049683

*With Best Compliments from :*

**Er. Bikram Keshari Patnaik**

(Surveyor & Loss Assessor)

**Madhusudan Nagar**
**Tulasipur, Cuttack-753 008**

Ph : (0671) 2300604(R)
2300662(O)

Mob : 9437000604

*With Best Compliments from :*



## Mr. Subrat Kumar Mishra

Development Officer

Life Insurance Corporation of India
C.B.O. III, Gandarpur, Cuttack-753 003

Ph : (0671) 2441323(O),
2440897(O)

*With Best Compliments from :*



## M/S SINGH CONSULTANCY

(Tax, Insurance & Finance Consultancy)
Prop : Amarendra Singh
Opposite State Bank of India
Balichandrapur, Jajpur - 754 205
Ph: (0671) 2768842
Mob: 9437068842

# Sri S. N. Mohanty ଙ୍କ

ଆର୍ଥିକ ସହାୟତାରେ

ନନ୍ଦକିଶୋର ବିଦ୍ୟାମନ୍ଦିର, କୁସୁପୁର ପରିସରରେ

ନିର୍ମିତ ହୋଇଥିବା ନୂତନ ଗୃହର

ଶୁଭ ଉଦ୍ଘୋଟନ ଖୁବ୍ ଶୀଘ୍ର ଅନୁଷ୍ଠିତ ହେବ ।

ଏହି ଉତ୍ସବରେ ବିଦ୍ୟାମନ୍ଦିରର

ସମସ୍ତ ପୁରାତନ ଛାତ୍ରଛାତ୍ରୀ ଯୋଗଦେବା ପାଇଁ ଅନୁରୋଧ

ପୁରାତନ ଛାତ୍ର ସଂସଦ

**ସୁବର୍ଣ୍ଣ ଜୟନ୍ତୀ ଉତ୍ସବ କମିଟି**

ନନ୍ଦକିଶୋର ବିଦ୍ୟାମନ୍ଦିର, କୁସୁପୁର

# ପୁରାତନ ଛାତ୍ର ସଂସଦ

## ନନ୍ଦକିଶୋର ବିଦ୍ୟାମନ୍ଦିର, କୁସୁପୁର

## ସୁବର୍ଣ୍ଣ ଜୟନ୍ତୀ ଉତ୍ସବ
## Silver Jubilee Celebration

ଯେଉଁ ଅନୁଷ୍ଠାନରେ ଶିକ୍ଷାଲାଭ କରି ଆଜି ଅନେକ ଆଦର୍ଶ ମଣିଷ, ସୁନାଗରିକ ତଥା ସମାଜରେ ଜଣେ ବୋଲି ପରିଚିତ ହୋଇଛନ୍ତି-ସେହି ଅନୁଷ୍ଠାନ ପ୍ରତି ଆମର ନିଶ୍ଚୟ କିଛିନା କିଛି ଉତ୍ତର ଦାୟିତ୍ୱ ଓ କର୍ତ୍ତବ୍ୟ ରହିଛି । ଏ କଥା କହିବାର ଉଦ୍ଦେଶ୍ୟ ହେଲା - ନନ୍ଦକିଶୋର ବିଦ୍ୟାମନ୍ଦିର ଅନେକ ଦିନରୁ ୫୦ ବର୍ଷ ପୂରଣ କରି ସାରିଥିଲେ ହେଁ, ତା'ର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ଏ ପର୍ଯ୍ୟନ୍ତ ପାଳିତ ହୋଇନାହିଁ ।

କାରଣ ପରିବର୍ତ୍ତିତ ପରିସ୍ଥିତିରେ ସମସ୍ତେ ଜୀବନ ଓ ଜୀବିକାକୁ ନେଇବ୍ୟସ୍ତ ରହି ସେ କଥା ଭୁଲି ଯାଇଛନ୍ତି । ଏବେ ଆଉ ସେ କଥା ଚିନ୍ତା ନକରି ଆସନ୍ତା ୨୦୦୫ ମସିହା ଡିସେମ୍ବର ମାସରେ ନନ୍ଦକିଶୋର ବିଦ୍ୟାମନ୍ଦିରର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ **Silver Jubilee** ପାଳନ କରିବା ପାଇଁ କେତେଜଣ ଆଗ୍ରହୀ ଓ ଉତ୍ସାହୀ ବଂଧୁ ପ୍ରସ୍ତାବ ପ୍ରଦାନ କରିଛନ୍ତି । ଏଥିପାଇଁ ୧୦ ବର୍ଷର(୧୯୬୮ରୁ ୧୯୭୭) ବ୍ୟାଚର ପ୍ରତିନିଧି ମନୋନୀତ କରାଯାଇ ଆସନ୍ତା ମଇ ୧୯ ତାରିଖରେ ଏଥିପାଇଁ ସ୍କୁଲ ପରିସରରେ ଏକ ବୈଠକ ଡକାଯାଇଛି । ଅନ୍ୟ ବ୍ୟାଚର ପ୍ରତିନିଧିମାନେ ମଧ୍ୟ ଏଥିରେ ଯୋଗ ଦେବାକୁ ଅନୁରୋଧ । ଏହି ଉତ୍ସବକୁ ସବୁ ଦିଗରୁ ସଫଳ କରିବା ପାଇଁ ସମସ୍ତଙ୍କର ସହଯୋଗ ଆମର ଏକାନ୍ତ କାମ୍ୟ ।

ଏହି ଉତ୍ସବ ପରିପ୍ରେକ୍ଷୀରେ ଏକ ସ୍ମରଣିକା ପ୍ରକାଶ କରିବାର ଯୋଜନା କରାଯାଇଛି । ଏଥିପାଇଁ ଆଗ୍ରହୀ ବଂଧୁମାନେ ସେମାନଙ୍କର ସୁମଧୁର ସ୍ମୃତି ଲେଖି ପଠାଇବାକୁ ଅନୁରୋଧ ।

***ଆବାହକ :*** **ପୁରାତନ ଛାତ୍ର ସଂସଦ**

***ଯୋଗାଯୋଗ :*** **ଶ୍ରୀଯୁକ୍ତ ବଳରାମ ସାହୁ**

ଗୁଣ୍ଡୁପୁର, କଟକ, ଫୋନ - (୦୬୭୧)୨୭୬୮୮୦୯

